# ଭଗବଦ୍ ଗୀତା

(ଓଡ଼ିଆ ପଦ୍ୟାନୁବାଦ)

ଅନୁବାଦକ : सदानन्द मिश्र

# ଭଗବଦ୍ ଗୀତା

(ସଂସ୍କୃତ ଶ୍ରୀମଦ୍ ଭଗବଦ୍ ଗୀତାର ଓଡ଼ିଆ ପଦ୍ୟାନୁବାଦ)

ଅନୁବାଦ :

ସଚ୍ଚିଦାନନ୍ଦ ମିଶ୍ର

# ଭଗବଦ୍ ଗୀତା

ଓଡ଼ିଆ ପଦ୍ୟାନୁବାଦ


ଅନୁବାଦକ :—

**ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର**

ପୁରୁଣା ଡାକଘର ସାହି, ଛତ୍ରପୁର



ପ୍ରକାଶକ :—

**ହର୍ଷ ପ୍ରକାଶ**

ମାର୍ଫତ୍ :- ସଚ୍ଚିଦାନନ୍ଦ ମିଶ୍ର

ଛତ୍ରପୁର (ଗଞ୍ଜାମ)

ମୁଦ୍ରଣ :—

**ଶ୍ରୀ ଜଗନ୍ନାଥ ପ୍ରିଣ୍ଟର୍ସ**

ଶଙ୍କର ମଠ ସାହି, ଛତ୍ରପୁର (ଗଞ୍ଜାମ)

**ପ୍ରଥମ ମୁଦ୍ରଣ, ୧୯୯୯**

**ମୂଲ୍ୟ :- ୩୦ (ତିରିଶି ଟଙ୍କା)**

**BHAGABAD GITA** (Oriya version in verse) by Sri **Satchidananda Mishra**, Old Post Office Street, Chatrapur Published by **Harsha Prakasha** and Printed at **Shree Jagannath Printers**, Sankar Matha Street Chatrapur.

First edition, 1999

**Price; Rs. 30 (Thirty only)**

# ଅନୁବାଦ କାହିଁକି ?

ଅନୁବାଦ କରିବାର ମୂଳ ଆବଶ୍ୟକତା ମୋର ନିଜର ଜ୍ଞାନାର୍ଜନ ।

ମୁଁ ସ୍କୁଲ୍ କଲେଜରେ ସଂସ୍କୃତ ଶିଖି ନାହିଁ ଯଦିଚ ସଂସ୍କୃତ ଶିଖିବାର ଅଭିଳାଷ କୈଶୋରରୁ ରହିଥିଲା । ମୁଁ ନବମ ଶ୍ରେଣୀରେ ପଢ଼ିବା ବେଳେ ମାଟ୍ରିକ୍ୟୁଲେସନ୍ ପାଇଁ ଗୋଟିଏ ଐଚ୍ଛିକ(ଅପ୍ସନାଲ୍) ବିଷୟ ବାଛିବାର ଅବସର ମିଳିଥିଲା । ମୋ ନନା (ପିତା) ପାଠ ବିଷୟରେ ମୋତେ ପୂର୍ବ ନିଜ ଇଚ୍ଛାନୁସାରେ ଚଳିବାକୁ ଛାଡ଼ିଥିଲେ । ମୁଁ ଐଚ୍ଛିକ ବିଷୟ ଭାବେ ବାଛିଥିଲି ସଂସ୍କୃତ ଓ ସେହି ଅନୁସାରେ ସଂସ୍କୃତ ଐଚ୍ଛିକ ଶ୍ରେଣୀରେ ନାମ ଲେଖାଇଲି । ଆମର ପ୍ରଧାନ ଶିକ୍ଷକ ଥିଲେ ବିଏ ସାହେବ ମଦନ ମୋହନ ରଥ । ଜଣେ ବିଚକ୍ଷଣ ଶିକ୍ଷକ ଭାବରେ ତାଙ୍କର ବିଶେଷ ସୁନାମ ଥିଲା । ପ୍ରତିଦିନ ଶ୍ରେଣୀ ପରିଦର୍ଶନରେ ଯାଉଥିଲେ ଓ ମୋତେ ସଂସ୍କୃତ ଐଚ୍ଛିକ ଶ୍ରେଣୀରେ ବସିଥିବାର ଦେଖି ଶିକ୍ଷକ ପଣ୍ଡିତ ପ୍ରଭାକର ମିଶ୍ରଙ୍କୁ ମୋର ନାମ ପଚାରି ବୁଝିଲେ । ଏହାର ଦିନେ ଖଣ୍ଡେ ପରେ ପୁଣି ପରିଦର୍ଶନରେ ଯିବା ବେଳେ ମୋତେ ଠିଆ ହେବାକୁ କହିଲେ ଓ କାନକୁ ଧରି ସେହି ଶ୍ରେଣୀରୁ ନେଇ ମୋତେ ଗଣିତ ଐଚ୍ଛିକ ଶ୍ରେଣୀରେ ବସାଇ ଦେଲେ । ପରେ ଗଣିତ ଶିକ୍ଷକଙ୍କ ଠାରୁ ଜାଣିଲି ଯେ ରଥ ଆଜ୍ଞା ମୋର ରେକର୍ଡ଼ ଚିହ୍ନି ମୁଁ ଗଣିତରେ ଖୁବ୍ ଭଲ କରୁଥିବାର ଦେଖି ମୋତେ ଗଣିତ ଐଚ୍ଛିକ ଦିଆଇଲେ । ଫଳରେ ମୋର ଐଚ୍ଛିକ ମୋର ଇଚ୍ଛା ଅନୁସାରେ ହେଲନାହିଁ । ମୋର ଇଚ୍ଛା କାର୍ଯ୍ୟକାରୀ ହେଲା ନାହିଁ ।

ଆନୁଷ୍ଠାନିକ ଶିକ୍ଷା ସରିବା ପରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ପ୍ରତି ମୋର ସହଜାତ ପ୍ରେମ ଯୋଗୁଁ ସଂସ୍କୃତ ଭାଷା ପ୍ରତି ମୋର ଆକର୍ଷଣ ବଢ଼ିଥିଲା । ସାରଳା ଦାସ, ପୀତାମ୍ବର ଦାସ ପ୍ରଭୃତି ବହୁ ପ୍ରାଚୀନ କବି ' ନିଜକୁ ନ ପଢ଼ି ପଣ୍ଡିତ' ବୋଲିଇଛନ୍ତି । ଏହାର ଅର୍ଥ ହେଲା ସେମାନଙ୍କର ଆନୁଷ୍ଠାନିକ ଶିକ୍ଷା ନଥିଲେ ହେଁ ସେମାନେ ପାଣ୍ଡିତ୍ୟ ଅର୍ଜନ କରିଛନ୍ତି । ଓଡ଼ିଶାରେ ଓ ଅନ୍ୟତ୍ର ଏହି ଯୁଗରେ ମଧ୍ୟ ଅନେକ ସଂସ୍କୃତ ପଣ୍ଡିତଙ୍କର ଆନୁଷ୍ଠାନିକ ସଂସ୍କୃତ ଶିକ୍ଷା ନଥିବା କଥା ମୁଁ ଜାଣିଥିଲି । ମୋର ସପ୍ତମ ଶ୍ରେଣୀର ଶିକ୍ଷକ ପ୍ରସିଦ୍ଧ ଗୀତାଭାଷ୍ୟକାର ଅନ୍ତର୍ଯ୍ୟାମୀ ପତି ଶର୍ମା ଓ ଦଶମ ଶ୍ରେଣୀର ଶିକ୍ଷକ ରଘୁନାଥ ମିଶ୍ର ( ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଜ୍ୟେଷ୍ଠପୁତ୍ର ) ଆନୁଷ୍ଠାନିକ ଭାବରେ ସଂସ୍କୃତ ପଢ଼ି ନଥିଲେ ହେଁ ସଂସ୍କୃତରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ମୋ ନନା ହର୍ଷ ମିଶ୍ର ଜୀବନରେ ସ୍କୁଲ ଶିକ୍ଷା କି ବିଦ୍ୟାଳୟ ମାଡ଼ି ନଥିଲେ ମଧ୍ୟ ପଣ୍ଡିତ । ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଆଦି ବହୁ କୃତବିଦ୍ୟ ଲୋକ ନପଢ଼ି

ପଣ୍ଡିତ' ମୁଁ ସେମାନଙ୍କ ମାର୍ଗରେ ଯିବାକୁ ଇଚ୍ଛା କରି ନିଜେ ନିଜେ ସଂସ୍କୃତ ଶିଖିବାକୁ ଚେଷ୍ଟାକଲି । ମୋ ପାଇଁ ଶ୍ରୀକୃଷ୍ଣଙ୍କ ଉତ୍ସାହବାଣୀ ଥିଲା " ଆତ୍ମନୌ ଗୁରୁରାତ୍ମୈବ ପୁରୁଷସ୍ୟ, ବିଶେଷତଃ (ଭାଗବତ ୧୧.୭.୨୦) ।

'ସଂସର୍ଗଜାଃ ଦୋଷଗୁଣାଃ ଭବନ୍ତି' ଭାବି ଭୁବନେଶ୍ୱରରେ ସଂସ୍କୃତ ପଣ୍ଡିତ, ଅଧ୍ୟାପକଙ୍କ ସହିତ ଗୋଳିଆ ପୋଳିଆ ହେଲି । ଭୁବନେଶ୍ୱରର ପ୍ରମୁଖ ସଂସ୍କୃତ ଅନୁଷ୍ଠାନ ସଂସ୍କୃତ ପରିଷଦର ସଭ୍ୟ ହୋଇ ତାହାର ପ୍ରତ୍ୟେକ ସାପ୍ତାହିକ ବୈଠକରେ ସବୁବେଳେ ଯୋଗଦେଉଥିଲି । ସଂସ୍କୃତ ପଣ୍ଡିତ ମାନଙ୍କଠାରୁ ଉତ୍ସାହ ପାଇ ମୁଁ ମୋର ସଂସ୍କୃତ ଶିକ୍ଷା ଅଭ୍ୟାସ ଚାଲୁ ରଖିଲି । ଅଭ୍ୟାସର ଏକାଂଶ ରୂପେ କିଛିସଂସ୍କୃତ ରଚନାକୁ ଓଡ଼ିଆରେଭାଷାନ୍ତର କରିବାକୁ ଉଦ୍ୟମକଲି । ପ୍ରଥମେ ଧରିଲି'ଶୁକ ସପ୍ତତି'ଏକ ପ୍ରାଚୀନ କଥା ସଂଗ୍ରହ । ଏହା ସରଳ ସଂସ୍କୃତରେ ଥିବା ଶୁଣି ତାହାକୁ ବାଛିଥିଲି । ଭାଷାନ୍ତରଟି ଏବେ ବି ଅପ୍ରକାଶିତ ରହିଛି । ତାହା ପରେ ଧରିଲି ଭଗବଦ୍ ଗୀତା । ଗୀତାକୁ ବାଛିବାର କାରଣ ଦ୍ୱିବିଧ । ପ୍ରଥମ କଥା ହେଲା ଗୀତାର ପ୍ରତ୍ୟେକ ଶ୍ଳୋକର ଅନ୍ୱୟ ଓ ତାହାର ତାତ୍ପର୍ଯ୍ୟବୋଧକ ବ୍ୟାଖ୍ୟା ସୁଲଭ ଥିଲା । ଶ୍ଳୋକର ଅନ୍ୱୟ ଓ ସେଥିରେ ବ୍ୟବହୃତ ପ୍ରତ୍ୟେକ ପଦର ଅର୍ଥ ଭାଷା ଶିଖିବାରେ ସହାୟକହେଲା । ମୁଁ ପଦ୍ୟାନୁବାଦ କଲି କାରଣ ଗୀତା ଗୀତ ହେବାପାଇଁ ଉଦ୍ଦିଷ୍ଟ, ତାହା ପଦ୍ୟ ହେବା ଉପଯୁକ୍ତ । ଗୀତାକୁ ବାଛିବାର ଅନ୍ୟତର କାରଣ ଥିଲା ଭାରତୀୟ ଦର୍ଶନ ବିଷୟରେ ମୋର ଆଗ୍ରହ । ଅନୁବାଦ ପାଇଁ ଗୀତାର ପ୍ରତ୍ୟେକ ଶ୍ଳୋକର ତାତ୍ପର୍ଯ୍ୟ ବୁଝିବା ଅବସରରେ ମୋର ଭାରତୀୟ ଦର୍ଶନ ବିଷୟକ ଜ୍ଞାନ ବଢ଼ିବ, ଏହି ଆକାଂକ୍ଷା ଥିଲା । ଓଡ଼ିଆରେ 'ଯାତ୍ରା ଦେଖା ହେବ, ଭୁଜା ବିକା ହେବ' ବୋଲି କହୁଥାନ୍ତି । ମୁଁ ଭାଷା ଜ୍ଞାନ ସହିତ ଦର୍ଶନ ଜ୍ଞାନ ଅର୍ଜନ କରିବା ଲକ୍ଷ୍ୟରେ ଏ କାମ ଧରିଥିଲି ।

ଗୀତାର ଅଧିକାଂଶ ଭାଗ ଅନୁଷ୍ଟୁଭ୍ ଛନ୍ଦରେ ରଚିତ (ଅଳ୍ପଭାଗ ଉପଜାତି ଭଳି ଦୀର୍ଘତର ଛନ୍ଦରେ ମଧ୍ୟ ରଚିତ) । ନିଘୃଷିତତା ରକ୍ଷା ଲକ୍ଷ୍ୟରେ ଗୋଟିଏ ଶ୍ଳୋକକୁ ଗୋଟିଏ ପଂକ୍ତିରେ ପଦ୍ୟାନୁବାଦ କରିବାକୁ ସ୍ଥିର କଲି (ଏହା ଦ୍ୱାରା ଆଗ୍ରହୀ ପାଠକ ମୋର ଅନୁବାଦକୁ ମୂଳସଂସ୍କୃତ ସହିତ ମିଳାଇବା ସୁସାଧ ହେବ) । ଗୋଟିଏ ଅଧ୍ୟାୟକୁ ଏକାଧିକ ଛନ୍ଦରେ ରଚିବାର ପରଂପରା ଓଡ଼ିଆରେ ନ ଥିବାରୁ ଗୋଟିଏ ଛନ୍ଦକୁ ହିଁ ବାଛିଲି । ସବୁ ଅନୁଭବୀ ଅନୁବାଦକମାନେ ଜାଣନ୍ତି ଯେ ଅନୁବାଦର ଆକାର ସବୁବେଳେ ମୂଳଠାରୁ ଅଧିକ ହୋଇଯାଏ । ସବୁ କଥା ଭାବି ଅନୁବାଦ ପାଇଁ ଓଡ଼ିଆରେ ଲୋକପ୍ରିୟ ୧୧ ଅକ୍ଷରୀ ଗୋପୀଭାଷା ବାଣୀକୁ ବାଛିଲି ।

ମୋ ମତରେ ଗୀତା ପରି ଗାମ୍ଭୀର୍ଯ୍ୟପୂର୍ଣ୍ଣ ବିଷୟ ପରିବେଷଣ ପାଇଁ ନବାକ୍ଷରୀ ଭଗବଦ୍ ବାଣୀ ଅପେକ୍ଷା ଏହା ଅଧିକ ଉପଯୁକ୍ତ । ଏଥିରେ ଶ୍ଳୋକର ପ୍ରତି (ସାଧାରଣତଃ ୮ ଅକ୍ଷର ବିଶିଷ୍ଟ) ପାଦକୁ ପ୍ରତି ୧୧ ଅକ୍ଷରୀ ପାଦରେ ଭାଷାନ୍ତର କରାଯାଇଛି ।

ଗୀତା ବ୍ରହ୍ମବିଦ୍ୟା ବିଷୟକ ଯୋଗଶାସ୍ତ୍ର । ଯୋଗର ଅର୍ଥ ଆତ୍ମାର ପରମାତ୍ମା ସହିତ ମିଳନ । ଏହା ଜଟିଳ ଦର୍ଶନ ତତ୍ତ୍ୱ ବିଷୟକ ହୋଇଥିବାରୁ ଅନୁବାଦକୁ ସାବଲୀଳ କରିବା ସମ୍ଭବପର ହୋଇପାରି ନାହିଁ । ଅନୁବାଦ ପାଇଁ ମୂଳର ଗୁଡ଼ିଏ ପାରିଭାଷିକ ଶବ୍ଦକୁ ସ୍ୱୀକାର କରିବାକୁ ପଡ଼ିଛି । ଆଉ ମଧ୍ୟ, ଭାଷାକୁ କେତେକାଂଶରେ ଗଦ୍ୟଧର୍ମୀ କରିବାକୁ ହୋଇଛି । ତଥାପି ମୁଁ ଆଶା କରୁଛି, ଗଦ୍ୟପାଠରେ ଅଭ୍ୟସ୍ତ ଆଧୁନିକ ପାଠକଙ୍କୁ ଏହା ଅରୁଚିକର ବୋଧ ହେବ ନାହିଁ । ଯେଉଁ କେତେ ଜଣ ବିଜ୍ଞଙ୍କୁ ମୁଁ ଏହାର କିୟଦଂଶ ଶୁଣାଇଛି ସେମାନେ ମଧ୍ୟ ମୋର ଆଶା ସମୀଚୀନ ବୋଲି ମତ ଦେଇଛନ୍ତି । ଭାବକୁ ଧରିଲେ ଭାଷା କୃତ୍ରିମ ହେବ, ଭାଷାକୁ ସରଳ କଲେ ଭାବ ଅବିକୃତ ରହିବ ନାହିଁ । ଏ ନିୟମ ସବୁ ଅନୁବାଦ ପ୍ରତି ଖଟେ ।

ଅନୁବାଦର ଆଦର୍ଶ 'ଭାଷାନ୍ତର' ଶବ୍ଦରେ ନିହିତ ରହିଛି । ଅନୁବାଦରେ ଭାଷା ପୂରା ବଦଳିବା କଥା, ଭାଷାଛଡ଼ା ଆଉ କିଛି ବଦଳିବା କଥା ନୁହେଁ । ମୂଳରେ ଭାବ ଯାହା ଯେତିକି ଅଛି ତାହା ଅନୁବାଦରେ ପୂରାପୂରି ରହିବ, କିଛି ଅଧିକା ମିଶିବ ନାହିଁ କି କିଛି କଟିବ ନାହିଁ । ଏ ଆଦର୍ଶ ପାଳିବା ସୁସାଧ୍ୟ ନୁହେଁ । ହେଲେ ହେଁ ମୁଁ ଚେଷ୍ଟା କରିଛି ଯେପରିକି ପ୍ରତ୍ୟେକ ଶ୍ଳୋକର ଭାବ ଅନୁବାଦରେ ଅପରିବର୍ତ୍ତିତ ଓ ଅପରିବର୍ଦ୍ଧିତ ରହିବ । ମୁଁ ଏ ଦିଗରେ କେତେଦୂର ସାଫଲ୍ୟ ଅର୍ଜନ କରିଛି ତାହା ମୂଳ ସହିତ ମିଳାଇ ପଢ଼ିବା ସୁଧୀପାଠକେ ବିଚାର କରି ପାରିବେ ।

ଗୀତାରେ ବ୍ୟବହୃତ ଅନେକ ଶବ୍ଦ - ବିଶେଷତଃ ଦର୍ଶନଶାସ୍ତ୍ରର ପାରିଭାଷିକ ଶବ୍ଦ - ଆଜିକାଲି ଭିନ୍ନ ଅର୍ଥରେ ଚଳୁଛି । ଗୀତାକୁ ଅଧ୍ୟୟନ କରିଥିବା ପଣ୍ଡିତମାନେ ବହୁ ଶବ୍ଦର ଅର୍ଥ ବିଷୟରେ ଏକମତ ନୁହନ୍ତି । ଏହି ପରିସ୍ଥିତିରେ ମୂଳକୁ ମୁଁ ଯେପରି ବୁଝିଲି ସେହିପରି ଅନୁବାଦ କଲି ଓ ବିଭ୍ରାନ୍ତି ସୃଷ୍ଟି କରିବା ଆଶଂକା ନଥିବା ସ୍ଥଳେ, ମତାନ୍ତରକୁ ଅତିକ୍ରମ କରିବା ଲକ୍ଷ୍ୟରେ, ମୂଳରେ ପ୍ରୟୋଗ କରାଯାଇଥିବା ଶବ୍ଦକୁ ଅନୁବାଦ ପାଇଁ ଗ୍ରହଣ କଲି ।

ଭାରତରେ ମୁସଲମାନ ଭକ୍ତିଧର୍ମର ଧକ୍କା ଭିତରେ ବୈଷ୍ଣବ ଭକ୍ତିଧର୍ମର ଯେଉଁ ପ୍ରସାର ଘଟିଲ ସେଥିରେ ଓଡ଼ିଶାରେ 'ଭାଗବତଧର୍ମ' ଲୋକଧର୍ମରେ ପରିଣତ

ହୋଇଗଲା । ଗାଁ ଗାଁରେ 'ଭାଗବତ ଘର', 'ଭାଗବତ ଟୁଙ୍ଗି', 'ଭାଗବତ ଗାଦି' ଆଦିର ପ୍ରତିଷ୍ଠା ସହିତ ପ୍ରତ୍ୟହ ଭାଗବତ ପାଠ ଏକ ଧର୍ମାଚରଣରେ ପରିଣତ ହେଲା । ଭାଗବତ ଗ୍ରାମ୍ୟ ସମାଜ ସ୍ତରକୁ ଆସିବାରୁ ଭାଗବତର ଓଡ଼ିଆ ଅନୁବାଦ ହିଁ ପ୍ରସାର ପାଇଲା, ପୂଜା ପାଇଲା, ପୁଣ୍ୟଗ୍ରନ୍ଥର ସମ୍ମାନ ପାଇଲା । ସଂସ୍କୃତ ଭାଗବତର ପ୍ରସାର ଓଡ଼ିଶାରେ ରହିଲା ନାହିଁ । କିନ୍ତୁ, ଗୀତା ଲୋକଧର୍ମ ହୋଇନାହିଁ । ଯଦିଓ ପଣ୍ଡିତ ସମାଜରେ ଏହାର ଖ୍ୟାତି ଅତୁଳନୀୟ, ଆନ୍ତର୍ଜାତିକ ମଧ୍ୟ । ତେଣୁ, ଓଡ଼ିଆ ଭାଷାର ଗୀତା, ଅଦ୍ୟାବଧି ବହୁ ସଂଖ୍ୟାରେ ପ୍ରକାଶିତ ହୋଇସାରିଥିଲେ ମଧ୍ୟ, ଏକ ପୁଣ୍ୟ ଗ୍ରନ୍ଥ ଭାବରେ ଗୃହୀତ ହେଉନାହିଁ । ସଂସ୍କୃତ ଗୀତା ହିଁ ପୁଣ୍ୟଗ୍ରନ୍ଥ । ଗୀତାର ବଂଶାଧିକ ଓଡ଼ିଆ ଭାଷାନ୍ତର (ପଦ୍ୟରେ ଓ ଗଦ୍ୟରେ) ପ୍ରକାଶ ପାଇଲାଣି ଓ ଅନେକ ଭାଷାନ୍ତର ଅପ୍ରକାଶିତ ଅବସ୍ଥାରେ ଥିବା କଥା ବି ମୁଁ ଜାଣେ । ତଥାପି ମୁଁ ମୋ ଅନୁବାଦକୁ ପ୍ରକାଶ କରୁଛି ଏହି ଭରସାରେ ଯେ କିଶୋର ଓଡ଼ିଆ ପାଠକଙ୍କ ପାଇଁ ମୋର ଏହି ପଦ୍ୟାନୁବାଦ ଗୀତାର ଗାମ୍ଭୀର୍ଯ୍ୟ ଓ ତତ୍ତ୍ୱକୁ ବୁଝିବାରେ ଅଧିକ ସହାୟକ ହେବ ।

ମୋର ନିଜ ମତ ହେଉଛି 'ଗୀତା' ଏକ ସ୍ୱୟଂସମ୍ପୂର୍ଣ୍ଣ ଗ୍ରନ୍ଥ ତେଣୁ, ପ୍ରସ୍ଥାନ-ତ୍ରୟର ଅନ୍ୟତମ । ଏହାର ପରିକଳ୍ପନା ମହାଭାରତ ମଧ୍ୟରେ ଏହାକୁ ଖଞ୍ଜିବା ଉଦ୍ଦେଶ୍ୟରେ ହୋଇଥିଲେ ହେଁ ମହାଭାରତ ସାର୍ବଜନୀନ ଆବେଦନ ଥିବା ଗ୍ରନ୍ଥ କିନ୍ତୁ ଗୀତା ଏକ 'ଉପନିଷଦ୍' ଜାତୀୟ ଗ୍ରନ୍ଥ ଯାହା ବଛାବଛା ଲୋକଙ୍କ ପାଇଁ ଅଭିପ୍ରେତ ଏକ ଗୁହ୍ୟଶାସ୍ତ୍ର (ଗୀତା ୧୮/୬୭) । ଆଧୁନିକ ପରିସ୍ଥିତିରେ କୌଣସି ବିଷୟକୁ ଗୁହ୍ୟ ରଖିବା ଏକ ପ୍ରଶଂସନୀୟ କାର୍ଯ୍ୟ ନୁହେଁ । ତେଣୁ ସମସ୍ତେ ଗୀତା ପାଠରେ ଅଧିକାରୀ, ଅବଶ୍ୟ ଗୀତାର ତତ୍ତ୍ୱକୁ ହୃଦୟଙ୍ଗମ କରିବା ଭଳି ଚେତନା ସେମାନଙ୍କର ଜନ୍ମରୁ ନଥିଲେ ଖାଲି ପାରାୟଣ କରିବା ଢ଼ଙ୍ଗରେ ଗୀତା ପଢ଼ିଲେ ସେମାନେ ବିଶେଷ ଲାଭ ପାଇ ପାରିବେ ନାହିଁ । ଭାବ ହୃଦୟଙ୍ଗମ କରିବା ପାଇଁ ମାତୃଭାଷାର ଆଶ୍ରୟ ଶ୍ରେୟ ।

ମୋର ଏହି ପଦ୍ୟାନୁବାଦର ପ୍ରକାଶନ କାର୍ଯ୍ୟରେ ଅଧ୍ୟାପକ ଶ୍ରୀ ମନୋରଞ୍ଜନ ଦାସ ଓ ନୂତନ ମହାନ୍ତି ଆଗ୍ରହ ଦେଖାଇ ଏହାର ପ୍ରୁଫ୍ ସଂଶୋଧନ ଆଦି ବିଷୟରେ ସହଯୋଗ ଦେଇ ମୋତେ ଅନୁଗୃହୀତ କରାଇଛନ୍ତି ।

ଗାଭୀ ରୂପ ହେଲେ ଉପନିଷଦେ ।
ଗୋପାଳକୃଷ୍ଣ ଦୁହିଲେ ତା ଶଧେ ।
ତା'ର ବୀଭତ୍ସ ବତ୍ସା, ଗୀତା କ୍ଷୀର ।
ଆସ ହେତେ ପିଅ ତା; ସୁଧା ଧାର ।

ସଚ୍ଚିଦାନନ୍ଦ ମିଶ୍ର

(୧-୫)

# ପ୍ରଥମ ଅଧ୍ୟାୟ

## (ବିଷାଦ ଯୋଗ)

**ଧୃତରାଷ୍ଟ୍ର କହିଲେ-**

ଧରମକ୍ଷେତ୍ର ସେ କୁରୁକ୍ଷେତ୍ରେ ତ,
ଯୁଝିବା ଇଚ୍ଛି ହେଲେ ସମବେତ ,
ମୋ ପୁତ୍ରେ ପୁଣି ପାଣ୍ଡୁପୁତ୍ରଚୟ ।
କି କର୍ମ ତହିଁ କଲେ କି, ସଂଜୟ ? ॥୧॥

**ସଂଜୟ କହିଲେ :-**

ପାଣ୍ଡବ ସେନା-ବ୍ୟୂହ-ସଂରଚନ ,
ନିରେଖି ସେ ଦୁର୍ଯ୍ୟୋଧନ ରାଜନ ,
ଆଚାର୍ଯ୍ୟଙ୍କ ସମୀପକୁ ଆସିଲେ ,
ଏସନ ବଚନମାନ ଭାଷିଲେ । ॥୨॥

ବ୍ୟୂହମୟ ମହା ପାଣ୍ଡବସେନା ,
ହେ ଆଚାର୍ଯ୍ୟ, ଦେଖିବା ହେଉ କିନା
ଯାହା ଭବଦୀୟ ଶିଷ୍ୟ ଧୀମାନ ,
ଦ୍ରୁପଦପୁତ୍ର କରିଛି ନିର୍ମାଣ । ॥୩॥

ଏଥି ଅଛନ୍ତି ଶୂର ଧନୁର୍ଦ୍ଧର ;
ଭୀମ-ଅର୍ଜୁନ ସମ ଯୋଦ୍ଧୃବର ,
ସାତ୍ୟକି, ଯୁଯୁଧାନ ଓ ବିରାଟ ,
ଓ ମହାରଥ ଦ୍ରୁପଦ ସମ୍ରାଟ । ॥୪॥

ଆବର ଧୃଷ୍ଟକେତୁ , ଚେକିତାନ ,
ପୁଣି କାଶୀରାଜନ ବୀର୍ଯ୍ୟବାନ ,
ଅଛନ୍ତି କୁନ୍ତିଭୋଜ ପୁରୁଜିତ ,
ନରପୁଙ୍ଗବ ଶୈବ୍ୟ ବିରାଜିତ । ॥୫॥

ପୁଣ ବିକ୍ରମୀ ଯୁଧାମନ୍ୟୁ ଆଉ
ଉତ୍ତମୌଜା ଏ ବୀର୍ଯ୍ୟର ଆଧାର ।
ସୁଭଦ୍ରା ସୁତ, ଦ୍ରୌପଦୀ ସୁତ,
ସକଳ ମହାରଥୀ ଠୁଳ ଏଥି । ॥୬॥

ଦ୍ୱିଜ ଉତ୍ତମ, ହେଉ ଅବଧାନ,
ଯେଉଁମାନେ ଆମ୍ଭ ସୈନ୍ୟେ ପ୍ରଧାନ ।
ମୋର ସୈନ୍ୟର ନାୟକ ଯେତେକ
କହୁଛି ତାଙ୍କ ନାମ ଏକ ଏକ । ॥୭॥

ସ୍ୱୟଂ ଆପଣ, ଭୀଷ୍ମ, କର୍ଣ୍ଣ ପୁଣ
କୃପ ସମର ବିଜୟୀ ନିପୁଣ
ଅଶ୍ୱତ୍ଥାମା, ବିକର୍ଣ୍ଣ ମୋ ଅନୁଜ,
ଭୂରିଶ୍ରବା ସୋମଦତ୍ତ-ତନୁଜ । ॥୮॥

ଆହୁରି ବହୁଶୂର ମୋର ଲାଗି
ପ୍ରସ୍ତୁତ ହେବାକୁ ଜୀବନ ତ୍ୟାଗୀ ।
ସର୍ବେ ନାନା ଅସ୍ତ୍ରଶସ୍ତ୍ରେ ମଣ୍ଡିତ
ଆଉ ସମର କୌଶଳ ପଣ୍ଡିତ । ॥୯॥

ଭୀଷ୍ମ କର୍ତ୍ତୃକ ହୋଇଛି ପାଳିତ
ଆମ୍ଭ ବଳ ତ ଅଟେ ଅକଳିତ,
ତାହାଙ୍କ ବଳ ମାତ୍ର ପରମିତ,
ଭୀମ ଦ୍ୱାରା ପୁଣ ହୋଇ ରକ୍ଷିତ । ॥୧୦॥

ସକଳ ବ୍ୟୂହପଥକୁ ନିରୋଧି,
ଯେଉଁ ଠାବରେ ରହି ସବୁ ଯୋଧୀ,
ଆପଣ ଓ ଆମ୍ଭ ସକଳ ଦଳ
ଜଗି ରହନ୍ତୁ ଭୀଷ୍ମଙ୍କୁ କେବଳ । ॥୧୧॥

ପ୍ରତାପୀ କୁରୁବୃଦ୍ଧ ପିତାମହ
ଦୁର୍ଯ୍ୟୋଧନ ମନେ ହର୍ଷ ନିବହ
ଜନମାଇବା ନିମନ୍ତେ, ନିଃଶଙ୍କ
ସିଂହରଡ଼ି ଛାଡ଼ି ଫୁଙ୍କିଲେ ଶଙ୍ଖ । ॥୧୨॥

ତହୁଁ ଅସଂଖ୍ୟ ଶଙ୍ଖ ଓ ଆନକ,
ଭେରୀ, ପଣବ, ଗୋମୁଖ ଅନେକ
ସରବ ହେଲେ ସହସା ସରବ,
ତୁମୁଳ ହେଲା ସମ୍ମିଳିତ ରବ । ॥୧୩॥

ତହୁଁ ଶ୍ୱେତମସ୍ତ-ହସ୍ତ-ବାହିତ
ମହତ ରଥେ ରହି ଆରୋହିତ
ମାଧବ ମଧ୍ୟପାଣ୍ଡବ ଯେ ଠାଇଁ
ଦିବ୍ୟଶଙ୍ଖକୁ ଫୁଙ୍କିଲେ ନିଠାଇ । ॥୧୪॥

ବାଇଲେ ପାଞ୍ଚଜନ୍ୟକୁ ଅଚ୍ୟୁତ,
ଦେବଦତ୍ତ ଶଙ୍ଖେ ଦେବେନ୍ଦ୍ରସୁତ,
ବୃକୋଦର ଭୀମ ଭୀମକରମା
ଫୁଙ୍କିଲେ ମହାଶଙ୍ଖ ପୌଣ୍ଡ୍ରନାମା । ॥୧୫॥

ରାଜା ଯୁଧିଷ୍ଠିର କୁନ୍ତୀତନୟ
ବାଇଲେ ଶଙ୍ଖ ଅନନ୍ତ ବିଜୟ ।
ସୁଘୋଷେ ମଣିପୁଷ୍ପକେ ଧଇଲେ
ନକୁଳ ସହଦେବ ତା ବାଇଲେ ॥ ॥୧୬॥

କାଶୀରାଜ ଧନୁର୍ଦ୍ଧର ପ୍ରବର,
ମହାରଥ ସେ ଶିଖଣ୍ଡୀ ଆବର,
ଧୃଷ୍ଟଦ୍ୟୁମନ, ବିରାଟ ସହିତ
ସାତ୍ୟକି, ଯେ ରଣେଅପରାଜିତ । ॥୧୭॥

ଦ୍ରୁପଦ, ଦ୍ରୌପଦୀ ତନୟମାନ,
ସୁଭଦ୍ରା ସୂନୁ ମହାବଳବାନ,
ନିଜ ନିଜ ଶଙ୍ଖ ଧରି ସକଳେ,
ହେ ପୃଥିବୀପତି, ବାଜନ କଲେ । ॥୧୮॥

ନିନାଦିତ କରି ନଭ-ଅବନୀ,
ଉତ୍ଥିଲ ସେ ସକଳ ଶଙ୍ଖଧ୍ୱନୀ,
କୌରବ ସମୁଦାୟର ହୃଦୟ
ବିଦାରି ଦେଲା ହୋଇ କି ନିର୍ଦ୍ଦୟ । ॥୧୯॥

ଶସ୍ତ୍ର ପ୍ରୟୋଗ ଉଦ୍‌ଯୋଗାଭିମୁଖୀ
କୌରବେ ସଜ୍ଜିତ ଥିବାର ଦେଖି,
କପିଧ୍ୱଜାରୂଢ଼ ପାଣ୍ଡୁନନ୍ଦନ
ତୋଳି କୋଦଣ୍ଡ ବୁଲାଇ ନୟନ । ॥୨୦॥

ଏଥୁ ଅନନ୍ତର, ହେ ମହୀପତି
ଭାଷିଲେ ହୃଷୀକେଶେ ଏ ଭାରତୀ ।

**ଅର୍ଜୁନ କହିଲେ -:**

ଉଭୟ ସେନାର ମଧ୍ୟ ଭାଗର
ରଥ, ଅଚ୍ୟୁତ, ମୋର ରଥବର । ॥୨୧॥

ମୋତେ ଯାହା ଯାହାଙ୍କର ସଙ୍ଗରେ
ଯୁଝିବାକୁ ହେବ ରଣରଙ୍ଗରେ ।
ଏଥି ସମରକାମୀ ଉଭା ହେତେ
ତାଙ୍କୁ ଦେଖି ପାରିବି ମୁଁ ଯେମନ୍ତେ । ॥୨୨॥

ମନ୍ଦମତି ଦୁର୍ଯୋଧନର ରଣେ
ହିତକାମୀ ଯେଉଁ ଯୁଯୁତ୍ସୁଗଣେ,
ଏଠାରେ ହୋଇଛନ୍ତି ଉପସ୍ଥିତ
ତାଙ୍କୁ ଯେମନ୍ତ କରିବି ଲକ୍ଷିତ । ॥୨୩॥

## ସଂଜୟ କହିଲେ :-

ହେ ଭାରତ, ପାଣ୍ଡବ ଗୁଡ଼ାକେଶ
ଏମନ୍ତେ ଭାଷନ୍ତେ ସେ ହୃଷୀକେଶ
ଉଭୟ ସେନାର ମଧ୍ୟ ଭାଗରେ
ରଥବରକୁ ରହାଇ ବେଗରେ

ପିତାମହ ଗୁରୁଦ୍ରୋଣ ପ୍ରମୁଖ
ସକଳ ମହୀପାଳଙ୍କ ସମ୍ମୁଖ ,
ବୋଇଲେ, ପାର୍ଥ, ଏହି ସ୍ଥଳେ ଠୁଳ
ଦେଖ ସକଳ କଉରବ କୁଳ । ॥୨୪,୨୫॥

ଅନନ୍ତର ଅର୍ଜୁନ ପାଣ୍ଡୁ ସୁତ
ଦେଖିଲେ ଉଭୟ ସେନାରେ ସ୍ଥିତ ,
ପିତା ପିତାମହ ଆଚାର୍ଯ୍ୟ କୁଳ
ପୁଅ ନାତି ଭାଇ ମିତ୍ର ମାତୁଳ । ॥ ୨୬ ॥

ଶ୍ୱଶୁରେ ଆବର ସୁହୃଦଗଣେ
ହୋଛେ ଉପସ୍ଥିତ ରଣପ୍ରାଙ୍ଗଣେ ।
ସକଳ ବନ୍ଧୁ ବାନ୍ଧବ ନିଚୟ
ବିଲୋକି ନିଜେ ସେ କୁନ୍ତୀ ତନୟ । ॥ ୨୭ ॥

ନିରତିଶୟ ଦୟାମୟ-ମନ
ହୋଇ ବୋଇଲେ ବଚନ ଏସନ ।

## ଅର୍ଜୁନ କହିଲେ :-

କୃଷ୍ଣ, ସଜ୍ଜିତ ସ୍ୱଜନ ସକଳେ
ଦେଖି ରଣକାମୀ ହେବା ଏ ସ୍ଥଳେ । ॥ ୨୮ ॥

ଅଙ୍ଗ ପ୍ରତ୍ୟଙ୍ଗ ହେଉଛି ଅବଶ
ମୋ ମୁଖ ଶୁଖିଯାଉଛି ବିଶେଷ ।
ମୋ ଶରୀର ହେଉଛି ଥରଥର
ଲୋମହର୍ଷ ଜନ୍ମୁଛି ଆବର । ॥ ୨୯ ॥

କରୁ ଗାଣ୍ଡିବ ପଡ଼ୁଅଛୁ ଗଳି,
ଲାଗୁଛୁ ଚର୍ମ ଜଳଗଲା ଭଳି ।
ସ୍ଥିରେ ରହି ପାରୁନାହିଁ ଉତ୍ତର
ଚିତ୍ତ ବିଚଳିତ ହେଉଛୁ ମୋର । ॥୩୦॥

ହେ କେଶବ, ମୁଁ ଦେଖୁଅଛୁ ପୁଣ
ଅନେକାନେକ ଅଶୁଭ ଶକୁନ ।
ସମରେ ସ୍ୱଜନେ ନାଶିଲେ ଶେଷେ
ଦେଖୁନାହିଁ ଶ୍ରେୟ ହେବାର ଲେଶେ । ॥୩୧॥

ହେ କୃଷ୍ଣ, ମୁଁ ଇଚ୍ଛେ ନାହିଁ ବିଜୟ
ଅଥବା ରାଜ୍ୟ କି ସୁଖନିଚୟ ।
ଗୋବିନ୍ଦ, ଆମ୍ଭର କି ପ୍ରୟୋଜନ
ରାଜ୍ୟ, ବିଷୟଭୋଗ ବା ଜୀବନ । ॥୩୨॥

ରାଜ୍ୟ-ଭୋଗ ସୁଖେ ଯାହାଙ୍କ ହିତେ
ଆକାଂକ୍ଷା ଜାଗଇ ଆମ୍ଭର ଚିତ୍ତେ ।
ଧନପ୍ରାଣ ଆଶା କରି ତ୍ୟାଗ ତ
ସେମାନେ ସ୍ୱୟଂ ସମରେ ଆଗତ । ॥୩୩॥

ଉଭା ହୋଇଛନ୍ତି ଆଚାର୍ଯ୍ୟକୁଳ
ପିତା ପୁତ୍ର, ପିତାମହ, ମାତୁଳ
ଆଉର ଶ୍ୱଶୁର ନାତି ସଙ୍ଗତ
ଶଳା ତଥା ବନ୍ଧୁଏ ଉପଗତ । ॥୩୪॥

ଏମାନେ ମୋତେ କରନ୍ତୁ ନିଧନ
ଏ ମହୀ ଛାର, ହେ ମଧୁସୂଦନ ,
ତିନ ଲୋକରାଜ ଲଭିବା ପାଇଁ
ଏହାଙ୍କୁ ବଧ ମୁଁ କରିବି ନାହିଁ । ॥୩୫॥

ଧୃତରାଷ୍ଟ୍ର ପୁତ୍ରେ କଲେ ନିଧନ
କି ସୁଖ ହେବ ଆମ୍ଭ, ଜନାର୍ଦ୍ଦନ ,

ଏହି ଆତତାୟୀଙ୍କୁ କଲେ ହତ
ସେହି ପାପ ଆମ୍ଭଙ୍କୁ ଲାଗିବ ତ । ।।୩୬।।

ହେବାରୁ କୌରବେ ଆମ୍ଭ ବାନ୍ଧବ
ତାଙ୍କୁ ବଧିବା ଅନର୍ହ, ମାଧବ ।

ନିଜ ଜନେ କରିଦେଲେ ନିଧନ
କେମନ୍ତେ ବା ହେବ ସୁଖବର୍ଦ୍ଧନ ? ।।୩୭।।

ହୋଇ ଲୋଭସକ୍ତ ହରଇ ଜ୍ଞାନେ
ଯେବେ ବା ବୁଝନ୍ତି ନାହିଁ ସେମାନେ ।
କୁଳକ୍ଷୟ ହେତୁକ ଦୋଷତକ
ମିତ୍ରଦ୍ରୋହଜ ଯେତେକ ପାତକ । ।।୩୮।।

ଜାଣି କୁଳହନନ ଦୋଷମାନ
ସେହି ପାପୁଁ ନିବୃତ୍ତ ହେବା ମନ ।

କେମନ୍ତେ ଅବା ଆମ୍ଭମାନଙ୍କର
ହେ ଜନାର୍ଦ୍ଦନ, ନ ହେବ ନିକର । ।।୩୯।।

ସନାତନ କୁଳଧର୍ମ ନିଚୟ
କୁଳକ୍ଷୟେ ନାଶ ଯାନ୍ତି ନିଶ୍ଚୟ ।

ଧର୍ମ ସରିଲେ ଅଧର୍ମ କେବଳ
ସାରା କୁଳକୁ କରିବ କବଳ । ।।୪୦।।

ହେ କୃଷ୍ଣ, ଅଧର୍ମ ଯେବେ ବଢ଼ଇ
କୁଳନାରୀ ନିଜ ଦୋଷେ ଜଡ଼ଇ ।

ବାର୍ଷ୍ଣେୟ, ଯୋଷିତା ଦୂଷିତା ହେଲେ
ବର୍ଣ୍ଣସଙ୍କରେ ଜନମିବେ ହେଲେ । ।।୪୧।।

ସ୍ୱକୁଳର ତଥା କୁଳଘ୍ନଙ୍କର
ନରକର ହେତୁ ହେବ ସଙ୍କର
ଲୁପ୍ତ ହେଇବାରୁ ପିଣ୍ଡ ତର୍ପଣ
ନରକେ ପଡ଼ନ୍ତି ତା ପିତୃଗଣ । ।।୪୨।।

ବର୍ଣ୍ଣସଙ୍କର କାରକ ଏତେକ
ଦୋଷେଁ କୁଳଘାତକଙ୍କ ଯେତେକ
ଜାତିକୁଳର ଧର୍ମ-ସନାତନ
ନିଶ୍ଚିତ ହୋଇଯାଏ ତ ଉଚ୍ଛନ୍ନ । ।।୪୩।।

ଶୁଣି ଆସିଛୁତ, ହେ ଜନାର୍ଦ୍ଦନ
ଉଚ୍ଛନ୍ନକୁଳ ଧର୍ମ ଯେତେ ଜନ ।
ଅନିଶ୍ଚିତ କାଳଯେ ଜନଙ୍କର
ନରକ ନିବାସ ହୁଏ ନିକର । ।।୪୪।।

ଅହୋ, ଅମାପ ପାପ ଆଚରଣେ
ଆମ୍ଭେ ଯା ଉଦ୍ୟତ ହୋଇଛୁ ରଣେ ,
କରିବା ପାଇଁ ସ୍ୱଜନେ ନିହତ
ରାଜ୍ୟସୁଖ ଲୋଭେ ପଡ଼ି ନିଶ୍ଚିତ । ।।୪୫।।

ମୋତେ ନିଶ୍ଚିନ୍ତ ନିରସ୍ତ୍ର ସମରେ
ଦେଖି ଯେବେ ଧୃତରାଷ୍ଟ୍ର କୁମରେ
ମୋତେ ନାଶନ୍ତି ହୋଇ ଶସ୍ତ୍ରକର
ତେବେ ତା ହେବ ମୋର କ୍ଷେମତର । ।।୪୬।।

**ସଂଜୟ କହିଲେ :-**

ଶୋକେ ବ୍ୟାକୁଳମାନସ ଅର୍ଜ୍ଜୁନ
ରଣପ୍ରାଙ୍ଗଣେ କହି ଏତେ ପୁଣ
କାଣ୍ଡ ସହିତ କୋଦଣ୍ଡ ଛାଡ଼ିଲେ
ରଥ କୋଡ଼ରେ ସେ ବସି ପଡ଼ିଲେ । ।।୪୭।।

— ୦ —

# ଦ୍ୱିତୀୟ ଅଧ୍ୟାୟ (୧-୫)

## ( ସାଂଖ୍ୟ ଯୋଗ )

### ସଂଜୟ କହିଲେ :-

ଯାର୍ ଲୋଚନ ଲୋତକେ ଅଥୟ
ଆଉ ଦୟାବିଗଳିତ ହୃଦୟ
ସେହି ବିଷଣ୍ଣମତିଙ୍କି ବଚନ
ମଧୁସୂଦନ ଭାଷିଲେ ଏସନ । ॥ ୧ ॥

### ଶ୍ରୀକୃଷ୍ଣ କହିଲେ :-

ହେ ଅର୍ଜୁନ, ବିପଦେ ଏ ପ୍ରକାର
କାହୁଁ ଜନମିଲା ଚିତ୍ତବିକାର ?
ଅନାର୍ଯ୍ୟୋଚିତ ଏ ଅଟେ ନିକର
ସ୍ୱର୍ଗ ଅଭାଜନ ଅକୀର୍ତ୍ତିକର । ॥ ୨ ॥

ହେ ପାର୍ଥ, କପାଁ କ୍ଲୀବତା ଭଜିବ ?
ତୁମ୍ଭଙ୍କୁ ତ ଏ କଥା ନ ସାଜିବ ।
ତୁଚ୍ଛ ହୃଦୟ ଦୁର୍ବଳତା ତ୍ୟାଗ
କର, ହେ ପରନ୍ତପ, ଉଠ ଜାଗ । ॥ ୩ ॥

### ଅର୍ଜୁନ କହିଲେ :-

ମଧୁସୂଦନ, ଭୀଷ୍ମ ଦ୍ରୋଣାଚାର୍ଯ୍ୟ
ପୂଜାର୍ହ ମଧ୍ୟେ ଯେ ଅଗ୍ରେ ବରିଷ୍ଠ,
ତାଙ୍କ ସଙ୍ଗେ ଶର ଧରି କେସନ
ଯୁଝିବି କହ, ହେ ଅରିନାଶନ । ॥ ୪ ॥

ମହତ ଗୁରୁଙ୍କୁ ବଧିବା ପ୍ରତି
ବରଂ ଶ୍ରେୟ ଇହ ଭିକ୍ଷୁବୃତ୍ତି,
ଅର୍ଥାର୍ଥୀ ଗୁରୁଙ୍କୁ କଲେ ନିଧନ
ମିଳେ କି ରକ୍ତାକ୍ତ ବିଷୟ ଧନ । ॥ ୫ ॥

ଜିଣିବା କିବା ହାରିବା ଏ ଯୁଦ୍ଧେ
କିସ ଗଉରବ ହେବ ନ ବୁଝେ ।
ଯିଏ ସମ୍ମୁଖେ ଧୃତରାଷ୍ଟ୍ର ବଂଶେ
ତାଙ୍କୁ ମାରି ମୁଁ ଜୀଇଁବା ନ ଇଚ୍ଛେ । ।।୬।।

ଦୟାକାତର ଧର୍ମେ ସନ୍ଦିହାନ
ହେବାରୁ ପୁଚ୍ଛା କରେ ଏହା ଜାଣ
ନିଶ୍ଚୟ କରି କହ ଶ୍ରେୟ ପଥ
ମୁଁ ତୁମ୍ଭ ଶିଷ୍ୟ ଓ ଶରଣାଗତ । ।।୭।।

ଅକଣ୍ଟକ ସମୃଦ୍ଧ ଭୂପ ପଣ
ଆଧିପତ୍ୟ ବା ଅମରେ ଅର୍ଜନ
ଲଭି ପାରିଲେହେଁ ମୋ ଶୋକ କାହିଁ
ଘୁଞ୍ଚିଲ ପରି ଜମା ଲାଗୁନାହିଁ । ।।୮।।

**ସଂଜୟ କହିଲେ :-**

ହୃଷୀକେଶେ କହି ଏସନ ପୁଣ
ପରନ୍ତପ ନିଦ୍ରାଳସ ଅର୍ଜୁନ ,
ଯୁଝିବି ନାହିଁ, ହେ ଗୋବିନ୍ଦ, ମୁଁ ତ
ବୋଲି ଜଣାଇ ହେଲେ ତୁଷ୍ଣୀଭୂତ । ।।୯।।

ଦୁଇ ବଳ ମଧ୍ୟରେ ଅବସନ୍ନ
ମାନସଙ୍କୁ ହୃଷୀକେଶ ଏସନ
କହିଲେ ହୋଇ ହସିଲା ପରାୟେ
ଯେନ ଭରତ କୁଳଜାତ ରାୟେ । ।।୧୦।।

**ଶ୍ରୀକୃଷ୍ଣ କହିଲେ :-**

କହୀ ଧୀମାନ ସମାନ ବଚନ
ଅଶୋଚ୍ୟେ ଯାହା କରୁଛ ଶୋଚନ
ମୃତ ଅବା ଜୀବିତ ଲୋକ ପାଇଁ
ପଣ୍ଡିତେ ଶୋକ ତ କରନ୍ତି ନାହିଁ । ।।୧୧।।

ମୁଁ ବା ତୁମେ ବା ଏ ଯେତେ ସ୍ୱଜନ
କେବେଁ ନ ଥିଲେ, ନୁହେଁ ତ ଏସନ ;
ଆମ୍ଭେ ଭବିଷ୍ୟେ ନାହିଁ ସମ୍ଭବିବା ,
ନୁହେଁ ଯଥାର୍ଥ ତେସନ ଭାବିବା । ।।୧୨।।

କୌମାର, ଯଉବନ ପୁଣି ଜରା
ଏ ଦେହୀ ଦେହେ ଲଭେ ଯଥା ପରା
ତଥା ଘଟଇ ଘଟାନ୍ତର ନକ
ଧୀର କାତର ନୁହଇ ତହିଁକ । ।।୧୩।।

କୌନ୍ତେୟ, ଇନ୍ଦ୍ରିୟବୃତ୍ତି ସକାଶ
ଶୀତୋଷ୍ଣ ସୁଖ ଦୁଃଖର ପ୍ରକାଶ ।
ଏ ତ ଅନିତ୍ୟ ସୃଷ୍ଟି ନାଶାସ୍ପଦ
ଏହାକୁ ସହ୍ୟ କର, ହେ ଭାରତ । ।।୧୪।।

ହେ ନରୋତ୍ତମ, ଯେଉଁ ଧୀର ନର
ସୁଖେ ଦୁଃଖେ କରେ ସମବସ୍ଥିର ,
ଇନ୍ଦ୍ରିୟରୁ ଯା ବ୍ୟଥା ନୋହେ ଭୋଗ୍ୟ
ସେ ସିନା ଅମୃତପଣକୁ ଯୋଗ୍ୟ । ।।୧୫।।

ଅସତ ଯାହା ସତ୍ତା ତାର ନାହିଁ ,
ସତର ଅଭାବ ତଥା ନ ଥାଇ ।
ସତର ଅସତର ତଥ୍ୟ ଜ୍ଞାନେ
ପାରଙ୍ଗମ ତତ୍ତ୍ୱଦରଶୀମାନେ । ।।୧୬।।

ଏଥି ଯେତୁ ସର୍ବବ୍ୟାପ୍ତ ପ୍ରମାଣ
ତାକୁ ହିଁ ଅବିନାଶୀ ବୋଲି ଜାଣ ,
ସେହି ଅବ୍ୟୟର ଲୋପସାଧନ
କେହି କରି ନ ପାରେ କଦାଚନ । ।।୧୭।।

ସେ ଅବିନଶ୍ୱର ନିତ୍ୟ ଅଜ୍ଞେୟ,
ଶରୀରୀର ଏ ଶରୀର ନିଶ୍ଚୟ
ବିନଶ୍ୱର ବୋଲି ଅଛୁ କଥିତ
ତେଣୁ ତୁମ୍ଭେ ଯୁଦ୍ଧ କର, ଭାରତ । ॥ ୧୮ ॥

ଯେ ବା ଏହାକୁ ହନ୍ତକ ମଣଇ,
ଏ ହତ ହେଲା ବୋଲି ଯେ ଜାଣଇ ।
ସେ ଉଭୟେ କେ ନଜାଣନ୍ତି ସତ,
ନୁହେଁ ଏ ହନ୍ତକ, ନୁହେଁ ଏ ହତ । ॥ ୧୯ ॥

ଏ ଜାତ ନୁହେଁ, କଦାପି ନ ମରେ,
ସମ୍ଭବ ବଢେ ନାହିଁ ବାରେ ବାରେ ।
ଏ ଅଜ ନିତ୍ୟ ଶାଶ୍ୱତ ପୁରାଣ
ଶରୀର ବଧେ ହତ ନୁହେଁ ଜାଣ । ॥ ୨୦ ॥

ଅବିନାଶୀ ନିତ୍ୟ ଅଜ ଅବ୍ୟୟ
ବୋଲି ଏହାକୁ ଯେ ଜାଣେ, କୌନ୍ତେୟ
କାହାକୁ କେମନ୍ତେ ଅବା ସେ ଜନ
କରାଇବ କି କରିବ ନିଧନ । ॥ ୨୧ ॥

ନର ଜୀର୍ଣ୍ଣବାସ ବର୍ଜନ କରି
ନବୀନ ବାସ ପନ୍ଧିରଲା ପରି
ଦେହୀ ଜୀର୍ଣ୍ଣ ଶରୀର ତେଜି କାଳେ
ନବୀନ ଶରୀର ଘେନଇ ଭାଳେ । ॥ ୨୨ ॥

ଶସ୍ତ୍ର ଏହାକୁ ନ ପାରେ ଛିଣ୍ଡାଇ
ଅଥବା ଅଗ୍ନି ପୋଡ଼ିପାରେ ନାହିଁ ।
ଏ ଭିଜେ ନାହିଁ ଜଳେ କଦାଚନ
ୟାକୁ ଶୁଖାଇ ନପାରେ ପବନ । ॥ ୨୩ ॥

ଛେଦନୀୟ ଏ ନୁହେଁ, ଦାହ୍ୟ ନୁହେଁ
ଆର୍ଦ୍ର ନ ହୁଏ, ଶୁଷ୍କ ନାହିଁ ହୁଏ ।
ନିତ୍ୟ ଏ ତ ସର୍ବତ୍ର ବିଦ୍ୟମାନ
ସ୍ଥିର ଅଚଳ ସନାତନ ଜାଣ । ।।୨୪।।

ଏ ଅବ୍ୟକ୍ତ, ଏ ତ ଅଚିନ୍ତ୍ୟ ଅଟେ
ବିକାର ବିହୀନ ବୋଲି ପ୍ରକଟେ ।
ଏହା ଜାଣି ଏହା ନିମିତ୍ତ ଚିତ୍ତ
ଶୋକେ ଜଡିବାର ନୁହେ ଉଚିତ । ।।୨୫।।

ନିତ୍ୟ ଜନ୍ମ ନିତ୍ୟ ମୃତ୍ୟୁ ଏହାର
ବୋଲି ଯଦି ତୁମ୍ଭେ କର ବିଚାର,
ତେବେ ବି, ହେ ମହାବାହୁ, ଏଥିକି
ଶୋକ ତୁମ୍ଭର ଅନୁଚିତ ନିକି । ।।୨୬।।

ଜାତର ମରଣ ତ ଧ୍ରୁବ କଥା
ମୃତର ଜନମ ହିଁ ଅଟେ ତଥା
ଅପରିହାର୍ଯ୍ୟ ଏ କଥା ନିମିତ୍ତ
ଶୋକେ ଜଡିବାର ନୁହେଁ ଉଚିତ । ।।୨୭।।

ଆଦ୍ୟେ ଅବ୍ୟକ୍ତ ଥିଲଟି ଏ ଭୂତ
ମଧ୍ୟେ ହିଁ ଧରେ ବ୍ୟକ୍ତରୂପକୁ ତ
ଅନ୍ତ୍ୟେ ଅବ୍ୟକ୍ତ ହେବ, ହେ ଭାରତ,
ସେ ଭୂତାର୍ଥେ ଶୋକ କିପାଁ କର ତ । ।।୨୮।।

ଏହାକୁ କେ ଆଶ୍ଚର୍ଯ୍ୟ ପରି ଦେଖେ,
କେ ଆଶ୍ଚର୍ଯ୍ୟ ବୋଲି ବଖାଣେ ମୁଖେ,
ଆଉ କେ ଆଶ୍ଚର୍ଯ୍ୟ ମଣି ଶୁଣଇ
ଶୁଣିଲେ ହେଁ କେ କିଛି ନ ଜାଣଇ । ।।୨୯।।

ଏ ଦେହୀ ସବୁରି ଦେହେ, ଭାରତ ,
ଅଟଇ ନିତ୍ୟ, ଅବଧ୍ୟ ଆଉ ତ ।
ତେଣୁ ସେହିସବୁ ଭୂତ ନିମିତ୍ତ
ଶୋକେ କରିବାର ନୋହେ ଉଚିତ । ।।୩୦।।

ଆଉ ବି, ସ୍ୱଧର୍ମ କଲେ ବିଚାର
ଅନୁଚିତ ବିଚଳିତ ହେବାର
ଧର୍ମଯୁଦ୍ଧ ହିଁ କ୍ଷତ୍ରିୟର ପାଇଁ
ଶ୍ରେୟସ୍କର ଆଉ କିଛି ହିଁ ନାହିଁ । ।।୩୧।।

ହେ ପାର୍ଥ, ଅନାୟାସେ ଉପସ୍ଥିତ
ନିରର୍ଗଳ ସ୍ୱର୍ଗଦ୍ୱାର ସମ୍ମିତ
ଏମନ୍ତ ଯୁଦ୍ଧ ଏକା ଭାଗ୍ୟବାନ
କ୍ଷତ୍ରିୟ ଲଭେ, ନ ଲଭଇ ଆନ । ।।୩୨।।

ଅଥବା ଯେବେ ତୁମ୍ଭେ ନୋହିବ ତ
ଏହି ଧର୍ମ ସଂଗ୍ରାମେ ନିରତ ,
ତେବେ ସ୍ୱଧର୍ମ କୀର୍ତ୍ତି ସମସ୍ତ
ହରାଇ ହେବ ହେଲେ ପାପଗ୍ରସ୍ତ । ।।୩୩।।

ସକଳେ ତୁମ୍ଭ ଅପକୀର୍ତ୍ତି କଥା
କାଳକାଳକୁ ଘୋଷିବେ ସର୍ବଥା
ଅକୀର୍ତ୍ତି ହିଁ ସମ୍ମାନିତ ଲୋକର
ମରଣ ହିଁ ନିକର ଶ୍ରେୟସ୍କର । ।।୩୪।।

ଭାବିବେ ନିଜେ ଯେତେ ମହାରଥ
ଡରି ରଣରୁ ରହିଲ ବିରତ ।
ଯେଉଁମାନେ ଏବେ କରନ୍ତି ମାନ୍ୟ
ତାଙ୍କ ମତରେ ହୋଇବ ସାମାନ୍ୟ । ।।୩୫।।

ତୁମ୍ଭର ସକଳ ବଇରିଗଣ
ନିନ୍ଦା କରି ତୁମ୍ଭ ସାମର୍ଥ୍ୟପଣ
ନାନାମତେ କହିବେ ଧିକ୍ ଧିକ୍
ତହୁଁ ଆଉ କେଉଁ ଦୁଃଖ ଅଧିକ । ।।୩୬।।

ମଲେ ଲଭିବ ସ୍ୱର୍ଗବାସ ଯୋଗ
ଜିଣିଲେ ତ ଭରିବ ମହୀ ଭୋଗ
ତେଣୁ, କୌନ୍ତେୟ ଯୁଝିବାର ଲାଗି
କୃତନିଶ୍ଚୟ ହୋଇ ଉଠ ଜାଗି । ।।୩୭।।

ସୁଖ ଦୁଃଖ ଲାଭ ଅଲାଭ ତଥା
ଜୟାଜୟକୁ ମଣି ଏକା କଥା ।
ତହୁଁ ଯୁଝିବାରେ ହୋଇଲେ ରତ
ତେବେ ନୋହିବ ତ ପାପ ପ୍ରାପତ । ।।୩୮।।

ହେ ପାର୍ଥ, କହିଲି ଏ ସାଂଖ୍ୟ ଜ୍ଞାନ
ଯୋଗ କହିବି କର ଅବଧାନ ।
ଯେଉଁ ଯୋଗରେ ରହିଲେ ନିଯୁକ୍ତ
କର୍ମବନ୍ଧନୁ ହୋଇବ ନିର୍ମୁକ୍ତ । ।।୩୯।।

ଏଥି ନଷ୍ଟ ନୁହେ ଯତ୍ନ ସକଳ
ଅବା ନ ଘଟେ ବିପରୀତ ଫଳ
କିଂଚିତ ହିଁ କଲେ ଏ ଧର୍ମ ଜାଣ
ମହାଭୟରୁ ମିଳେ ପରିତ୍ରାଣ । ।।୪୦।।

ଏଥିଟି ବ୍ୟବସାୟାତ୍ମିକା ବୁଦ୍ଧି
କୁରୁନନ୍ଦନ, ଏକା ବୋଲି ସିଦ୍ଧି ।
ବୁଦ୍ଧି ଏଥି ଅଯତ୍ନଶୀଳଙ୍କର
ବହୁଶାଖା ଓ ଅସଂଖ୍ୟ ନିକର । ।।୪୧।।

ହେ ପାର୍ଥ, ବେଦ ବାଦେ ହୋଇ ରତ
ଅପଣ୍ଡିତେ ବୋଲୁଥାନ୍ତି ନିୟତ
ବାହ୍ୟ ସୁଳଳିତ୍ୟ ମଣ୍ଡିତ କଥା
ନାହିଁ ଟି ବୋଲି ବେଦରେ ଅନ୍ୟଥା । ॥ ୪୨ ॥

ସେ ସବେ ସ୍ୱର୍ଗ ହିଁ ପରମ ଗତି
କାମନାମୟ ଯାହାର ବା ମତି
ସେ ସପାଦେ ଭୋଗଐଶ୍ୱର୍ଯ୍ୟ ଲଭେ
ଜନ୍ମକର୍ମଦ କ୍ରିୟା ବହୁବିଧେ । ॥ ୪୩ ॥

ସେହି କଥାରେ ଯା ଚିତ୍ତ ମୋହିତ
ଭୋଗଐଶ୍ୱର୍ଯ୍ୟ ଆସକ୍ତ ସେହି ତ
ତାହାର ବ୍ୟବସାୟାତ୍ମିକା ବୁଦ୍ଧି
ଲଭେ ନାହିଁ କେବେଁ ସମାଧିସିଦ୍ଧି । ॥ ୪୪ ॥

ଅର୍ଜୁନ, ବେଦ ତ୍ରିଗୁଣ-ଆଧାର ।
ତୁମ୍ଭେ ତ୍ରିଗୁଣେ କର ପରିହାର ।
ନିର୍ଯୋଗକ୍ଷେମ, ନିତ୍ୟସତ୍ତ୍ୱସ୍ଥିତ
ସ୍ୱଗତ, ନିର୍ଦ୍ୱନ୍ଦ୍ୱ ହେବା ଉଚିତ । ॥ ୪୫ ॥

ହେବାଠି ସର୍ବତ୍ର ବନ୍ୟା ପ୍ଲାବନ
ତହିଁ କୂପର ଯଥା ପ୍ରୟୋଜନ
ତତ୍ତ୍ୱଜ୍ଞାନୀ ବ୍ରାହ୍ମଣ ନିମନ୍ତେ ତଥା
ସକଳ ବେଦର ଆବଶ୍ୟକତା । ॥ ୪୬ ॥

ଅଧିକାର ତୁମ୍ଭର କର୍ମରେ ହିଁ ।
ଫଳପ୍ରାପ୍ତିରେ ତା କଦାପି ନାହିଁ ।
ଫଳକାମୀ ହୋଇ କର୍ମ ନ କର ।
ଆଉ ନହୁଅ ଅକର୍ମ ତତ୍ପର । ॥ ୪୭ ॥

ଅସିଦ୍ଧି ସିଦ୍ଧିକୁ ମଣି ସମାନ
ସାଧି ଯୋଗ, ମୋହ ଜଡ଼ିତ ଜାଣ,
ହେ' ଧନଞ୍ଜୟ, କରମ ଆଚର
ଯୋଗ ବୋଲିଏ ଟି ସମତ୍ୱରି । ॥ ୪୮ ॥

ବୁଦ୍ଧି ଯୋଗ ଠାରୁ, ହେ ଧନଞ୍ଜୟ,
କର୍ମ ନିକୃଷ୍ଟତର ଅବଶ୍ୟ ।
ବୁଦ୍ଧିର ଶରଣ ନେଉ ଆପଣ ।
ଫଳାଭିଳାଷୀଏ ଜାଣ କୃପଣ । ॥ ୪୯ ॥

ବୁଦ୍ଧିଯୁକ୍ତ ଛନ୍ଦି ଛାଡ଼େ ସର୍ବଥା
ସୁକୃତ ଦୁଷ୍କୃତ ଉଭୟ କଥା ।
ଏଣୁ ମୋନ ଲାଗି କର ଉଦ୍‌ଯୋଗ
କର୍ମର କୌଶଳ ଅଟଇ ଯୋଗ । ॥ ୫୦ ॥

କରି ପରିତ୍ୟାଗ କର୍ମଜ ଫଳ
ବୁଦ୍ଧିମନ୍ତ ମନୀଷୀଏ କେବଳ
ଜନ୍ମବନ୍ଧନରୁ ମୁକୁଳା ହେଲେ
ଅନାମୟ ପଦ ଲଭନ୍ତି ହେଲେ । ॥ ୫୧ ॥

ଯେବେ ତୁମ୍ଭ ବୁଦ୍ଧି ମୋହ ଗହନ
ଭେଦ ପାରିବ ତେବେ ଟି ବହନ
ଯେତେ ଶ୍ରୁତ ଯେତେ ଶ୍ରୋତବ୍ୟ ତଥା
ସେଥିରେ ନିର୍ବେଦ ହେବ ସର୍ବଥା । ॥ ୫୨ ॥

ଶ୍ରୁତି ମୋହେଁ ବିଚଳିତ ତୁମ୍ଭର
ବୁଦ୍ଧି ହେବେ ସମାଧିକୁ ଆଦରି
ନିଶ୍ଚଳ ଅଚଳ ରହି ପାରିବ
ତେବେ ନିଜ ଯୋଗ ଲାଭ କରିବ । ॥ ୫୩ ॥

## ଅର୍ଜୁନ କହିଲେ :-

ସ୍ଥିତପ୍ରଜ୍ଞ ଆଉ ସମାଧିସ୍ଥର
ଲକ୍ଷଣ, କେଶବ, କିକି ପ୍ରକାର ?
ସ୍ଥିତଧୀ କରଇ କିସ ଭାଷଣ ?
ଥାଏ କେମନ୍ତ, ଚଳଇ କେମନ ? ॥ ୫୪ ॥

## ଶ୍ରୀକୃଷ୍ଣ କହିଲେ :-

ମନୋଗତ କାମନାଦି ସକଳ
ମୂଳ ପରିହାର କରି କେବଳ
ଆତ୍ମାରେ ଯା ଆତ୍ମା ସନ୍ତୁଷ୍ଟ ରହେ
ହେ ପାର୍ଥ, ସେ ସ୍ଥିତପ୍ରଜ୍ଞ ବୋଲାଏ । ॥ ୫୫ ॥
ଦୁଃଖେ ଯାର ମନେ ଉଦ୍‌ବେଗ ନାହିଁ
ସୁଖରେ ପୁଣି ଯା' ସ୍ପୃହା ନଥାଇ
ଯେ ବା ସ୍ନେହଭୟକ୍ରୋଧ ରହିତ
ସେ ମନସ୍ୱୀ ସ୍ଥିତଧୀ ବୋଲାଇ ତ । ॥ ୫୬ ॥
ଅଶୁଭ କି ଶୁଭ ଲଭି ଲୋକରେ
ସେ ନିନ୍ଦା ପ୍ରଶଂସା କିଛି ନ କରେ ,
କାହିଁରେ ନ ଥାଏ ସେନେହ ଯାର
ପ୍ରଜ୍ଞା ପ୍ରତିଷ୍ଠିତ ନିକ ତାହାର । ॥ ୫୭ ॥
କୂର୍ମ ସ୍ୱଅଙ୍ଗେ ସାଙ୍କୁଡ଼ିଲ ପ୍ରାୟ
ବିଷୟଚୟରୁ ଯେ ଅବା ସ୍ୱୀୟ
ଇନ୍ଦ୍ରିୟମାନ କରେ ପ୍ରତ୍ୟାହାର,
ପ୍ରଜ୍ଞା ପ୍ରତିଷ୍ଠିତ ନିକ ତାହାର । ॥ ୫୮ ॥
ଦେହଧାରୀ ରହିଲେ ନିରାହାର
ବିଷୟ ଯିନା କରେ ପରିହାର
କାମନା କିନ୍ତୁ ନ ଛାଡ଼େ ସେ ତବେ
କାମନା ତୁଟେ ପରମେ ଦେଖିଲେ । ॥ ୫୯ ॥

ପୁରୁଷ ହେଲେହେଁ ବିବେକବନ୍ତ
କୌନ୍ତେୟ, କଲେହେଁ ଯତ୍ନ ଅତ୍ୟନ୍ତ
ଭ୍ରାମକ ଇନ୍ଦ୍ରିୟେ ମନକୁ ତାର
ହରନ୍ତି ନିଶ୍ଚେ କରି ବଳାତ୍କାର । ॥ ୬୦ ॥

ଯେଉଁ ଯୋଗୀ ମୋଠି ନିବେଶି ମନ
ଇନ୍ଦ୍ରିୟଙ୍କୁ କରିଥାଏ ଦମନ,
ଇନ୍ଦ୍ରିୟ ସରବ ବଶ ଯାହାର
ପ୍ରଜ୍ଞା ପ୍ରତିଷ୍ଠିତ ନିଜ ତାହାର । ॥ ୬୧ ॥

ନର ଧ୍ୟାନ ରଖେ ଯେତେ ବିଷୟେ
ତହିଁ ଆସକ୍ତି ଜନ୍ମେ ନିଃସଂଶୟେ ।
ଆସକ୍ତିରୁ କାମନା ସମ୍ଭବଇ
କାମନାରୁ କ୍ରୋଧ ଜନ୍ମ ଲଭଇ । ॥ ୬୨ ॥

କ୍ରୋଧରୁ ହୁଏ ସମ୍ମୋହ ଉଦୟ
ସମ୍ମୋହରୁ ସ୍ମୃତିଭ୍ରଂଶ ନିଶ୍ଚୟ
ସ୍ମୃତିଭ୍ରଂଶୁ ବୁଦ୍ଧିନାଶ ଜନମେ
ବୁଦ୍ଧିନାଶରୁ ବିନାଶ ଚରମେ । ॥ ୬୩ ।

ଇନ୍ଦ୍ରିୟଗଣ ଯାହାର ଅଧୀନ
ସେ ହୋଇ ଅନୁରାଗ-ଦ୍ୱେଷହୀନ
ଯେବେ ଭୋଗକରେ ବିଷୟଚୟ
ତଥାପି ପ୍ରସାଦ ଲଭେ ନିଶ୍ଚୟ । ॥ ୬୪ ॥

ପ୍ରସାଦ ଅବଶ୍ୟ କରେ ବିନଷ୍ଟ
ସେହି ଜନର ସବୁ ଦୁଃଖକଷ୍ଟ
ପ୍ରସନ୍ନଚିତ୍ତର ବୁଦ୍ଧି ତୁରିତ
ନୁହେ ଚଞ୍ଚଳ ହୁଏ ପ୍ରତିଷ୍ଠିତ । ॥ ୬୫ ॥

ଯେ ଯୋଗ ବର୍ଜିତ ସେ ବୁଦ୍ଧିହୀନ
ତାର ନ ଥାଏ ବି ଆତ୍ମଭାବନ
ଆତ୍ମଭାବନ ବିନା ଶାନ୍ତି ନାହିଁ
ଅଶାନ୍ତର ସୁଖ ଥିବ ବା କାହିଁ ? ॥ ୬୬ ॥

ସ୍ୱୈରଚାରୀ ଇନ୍ଦ୍ରିୟଙ୍କ ପଛରେ
ଯାର ମନ ଅନୁଗମନ କରେ
ତାର ପ୍ରଜ୍ଞାକୁ ହରନ୍ତି ଇନ୍ଦ୍ରିୟେ
ବାତେ ଅର୍ଣ୍ଣବେ ନାବେ ନେବା ନ୍ୟାୟେ । ॥ ୬୭ ॥

ହେ ମହାବାହୁ, ସକଳ ପ୍ରକାରେ
ଯାର ତୃନ୍ତ ଇନ୍ଦ୍ରିୟ କଶପାରେ
ଇନ୍ଦ୍ରିୟ ଭୋଗକୁ ପରିହାର;
ପ୍ରଜ୍ଞା ପ୍ରତିଷ୍ଠିତ ନିଜ ତାହାର । ॥ ୬୮ ॥

ଯା ନିଶା ନିଜଜଗତର ପାଇଁ
ତହିଁ ଜିତେନ୍ଦ୍ରିୟ ରହଇ ଚେଇଁ ।
ଦେଖେ ମରଣେ ରହିଥିବେ ଚେତ
ଆତ୍ମଦର୍ଶୀ ମୁନିର ତା ହିଁ ରାତ । ॥ ୬୯ ॥

ନିଶ୍ଚଳ ଜଳପୂର୍ଣ୍ଣ ଜଳଧିରେ
ଜଳ ପ୍ରବେଶ କରିନା ବାଧିରେ
ଯାଗରେ ବିଲୀନ ହୁଏ କାମନା
ସେ ଲଭେ ଶାନ୍ତି, କାମୀକି ତା ମନା । ॥ ୭୦ ॥

ଯେ ଜନ ବରଜି କାମନା ଜାଳ-
ନିସ୍ପୃହ ହୋଇ ନାହିଁ ଥାଏ କାଳ,
ସେ ମମତାହୀନ ନିରହଂକାର
ଶାନ୍ତିରେ ତାର ଏକା ଅଧିକାର । ॥ ୭୧ ॥

ହେ ପାର୍ଥ, ବ୍ରାହ୍ମୀସ୍ଥିତି ଏ ବୋଲାଏ,
ଏହା ମିଳନ୍ତେ ମୋହ ଭ୍ରାନ୍ତି ଯାଏ
ମୃତ୍ୟୁ ବା ମିଳେ ଏହା ଅନ୍ତକାଳେ
ନର ଲଭେ ବ୍ରହ୍ମନିର୍ବାଣ ତାକେ । ॥ ୭୨ ॥

# ତୃତୀୟ ଅଧ୍ୟାୟ (୧-୪)

## ( କର୍ମ ଯୋଗ )

### ଅର୍ଜୁନ କହିଲେ :-

ହେ ଜନାର୍ଦ୍ଦନ, ଯେବେ ତୁମ୍ଭ ମତେ
କର୍ମ ଠାରୁ ବୁଦ୍ଧି ଉତ୍କୃଷ୍ଟ ସତେ,
ତେବେ, କେଶବ, ମୋତେ କପାଇଁ ତ
ଘୋର କର୍ମରେ କର ନିୟୋଜିତ ? ॥ ୧ ॥

ଏମନ୍ତ ତେମନ୍ତ ନାନା କଥା କହି ତ
ମୋର ବୁଦ୍ଧିକୁ କରୁଛ ମୋହିତ ।
ପ୍ରାପତ ହେବ ଯଦ୍ଦ୍ୱାରା ମୋ ଶ୍ରେୟ
ସେ କଥା ହିଁ କହ କରି ନିଶ୍ଚୟ । ॥ ୨ ॥

### ଶ୍ରୀକୃଷ୍ଣ କହିଲେ :-

ଆଗୁଁ ତୁମ୍ଭଙ୍କୁ ବୁଝାଇ କହିଛି,
ଲୋକରେ ନିଷ୍ଠା ଦ୍ୱିବିଧ ରହିଛି ।
ସାଂଖ୍ୟମତବାଦୀର ଜ୍ଞାନ ଯୋଗ,
ଯୋଗୀର କର୍ମଯୋଗ, ହେ ଅନଘ । ॥ ୩ ॥

ମନୁଷ୍ୟ ନ କଲେ କର୍ମ କେବଳ
ଏଡ଼ି ନ ପାରବ କର୍ମ-କବଳ ।
କର୍ମ ସନ୍ନ୍ୟାସ ମାତ୍ର ଯେ କରଇ
ସେ ତହୁଁ ସିଦ୍ଧି ଲଭି ନ ପାରଇ । ॥ ୪ ॥

ଅଧ୍ୟାୟ-୩ (୫-୧୦)

କେହି କେବେ କର୍ମରତ ନ ରହି
କ୍ଷଣେ ହେଲେହେଁ ତିଷ୍ଠି ନ ପାରଇ ।
ପ୍ରକୃତିଗତ ଗୁଣରୁ ସକଳେ
ଅନାୟତ୍ତେ କର୍ମ କରନ୍ତି ବଳେ । ॥ ୫ ॥

ସଂଯତ କରି କର୍ମେନ୍ଦ୍ରିୟଗଣେ
ଯେ ବିମୂଢ଼ାତ୍ମା ଭାବେ ମନେମନେ
ଇନ୍ଦ୍ରିୟ ଉପଭୋଗର ବିଷୟ
ସେହି ଟି ମିଥ୍ୟାଚାରୀ ନିଃସଂଶୟ । ॥ ୬ ॥

ଅର୍ଜୁନ, ମନ ଦ୍ୱାରା ପକ୍ଷାନ୍ତରେ
ଯେ ଇନ୍ଦ୍ରିୟେ ନିୟତ କରି କରେ
କର୍ମେନ୍ଦ୍ରିୟେ ଅନାସକ୍ତ କରମ
ସେ ଜନ ଟି ଜାଣ ଜ୍ଞାନ-ପରମ । ॥ ୭ ॥

ତୁମ୍ଭେ ନିୟତ ଭାବେ କର୍ମ କର
ଅକର୍ମ ଠାରୁ କର୍ମ ଶ୍ରେୟସ୍କର
ଆଉ ବି ନ କଲେ କର୍ମାଚରଣ ।
ଅସମ୍ଭବ ହେବ ଦେହଧାରଣ । ॥ ୮ ॥

ଯଜ୍ଞେତର କର୍ମେ ରହିଲେ ରତ
କର୍ମ ବନ୍ଧନ ହୁଏ ଲୋକର ତ ।
କୌନ୍ତେୟ, ତେଣୁ ନ ହୋଇ ଜଡ଼ିତ,
କର୍ମ କରିବା ତୁମ୍ଭର ଉଚିତ । ॥ ୯ ॥

ପୂର୍ବେ ପ୍ରଜାପତି ଯଜ୍ଞ ସହିତ
କରି ପ୍ରଜା ସୃଷ୍ଟି ଥିଲେ କହିଛି ।
ଯଜ୍ଞେ ହେଉ ତୁମ୍ଭ ବର୍ଦ୍ଧିତ ଯୋଗ
ପୂର୍ଣ୍ଣ ଅଭିଷ୍ଟ ସକଳର ଭୋଗ । ॥ ୧୦ ॥

ତୁମ୍ଭେ କର ଦେବେ ସନ୍ତୋଷଭର
ଦେବେ ସାଧନ୍ତୁ ସନ୍ତୋଷ ତୁମ୍ଭର
ପରସ୍ପର ଭାବଲେ ହିତ କଥା
ପରମ ଶ୍ରେୟ ମିଳିବ ସର୍ବଥା । ॥ ୧୧ ॥

ଯଜ୍ଞ ଦ୍ୱାରା ସନ୍ତୁଷ୍ଟ ହେଲେ ଦେବେ
ତୁମ୍ଭଙ୍କୁ ବାଞ୍ଛିତ ଭୋଗାଦି ଦେବେ ।
ଦେବଦତ୍ତ ଦ୍ରବ୍ୟ ଯେବେ ନ ଦେଇ
ସେହୁ ଭୁଞ୍ଜି ଥାଇ ଚୋର ଟି ସେହି । ॥ ୧୨ ॥

ଯଜ୍ଞେ ଯଜ୍ଞାବଶିଷ୍ଟ କରି ଗ୍ରାସ
ସବୁ କଲୁଷ କରନ୍ତି ବିନାଶ
ଯେ ପାପାତ୍ମା ସ୍ୱାର୍ଥେ କରଇ ପାକ
ସେହି ଭୁଞ୍ଜୁଥାଇ ପାତକପାକ । ॥ ୧୩ ॥

ଅନ୍ନରୁ ପ୍ରାଣୀଗଣ ଉତ୍ପନ୍ନ
ବରଷଣରୁ ସମ୍ଭବଇ ଅନ୍ନ ।
ଯଜ୍ଞ ସକାଶୁଁ ହୁଏ ବୃଷ୍ଟିପାତ
ଯଜ୍ଞ ହୁଅଇ ତ କର୍ମରୁ ଜାତ । ॥ ୧୪ ॥

ବେଦମନ୍ତ୍ରରୁ ଜାଣ କର୍ମ ଜାତ
ମନ୍ତ୍ର ଅକ୍ଷରବ୍ରହ୍ମଜ ସାକ୍ଷାତ
ତେଣୁ, ସର୍ବଗତ ବ୍ରହ୍ମ ସତତ
ଯଜ୍ଞରେ ରହିଥାନ୍ତି ପ୍ରତିଷ୍ଠିତ । ॥ ୧୫ ॥

ଇହୁ ପ୍ରବର୍ତ୍ତିତ କର୍ମଚକ୍ରରେ,
ପାର୍ଥ, ଯେ ଅନୁସରଣ ନ କରେ,
ଇନ୍ଦ୍ରିୟ ବିଳାସୀ ପାପୀ ସେ ଜାଣ
ବୃଥା ଜୀବନ କରଇ ଧାରଣ । ॥ ୧୬ ॥

ମାତ୍ର, ଆତ୍ମା ସଙ୍ଗେ ହିଁ ପ୍ରୀତ ଯାର
ଆତ୍ମା ଠାରେ ତୃପ୍ତ ରହେ ଯେ ଆର
ଯାହାର ଆତ୍ମାରେ ସନ୍ତୋଷ ଥାଇ
ତାର କିଛି ହିଁ କରଣୀୟ ନାହିଁ । ।। ୧୭ ।।

କରିବାର ଅବା ନକରିବାର
କିଛି ପ୍ରୟୋଜନ ନାହିଁ ତାହାର
ସାରା ଜଗତରେ ତାହାର ପାଇଁ
ଆଶ୍ରୟଣୀୟ ହୋଇ କିଛି ନାହିଁ । ।। ୧୮ ।।

ତେଣୁ ଅନାସକ୍ତ ରହି ନିରତ
କର୍ତ୍ତବ୍ୟ ସମ୍ପାଦନେ ରହ ରତ ।
ଅନାସକ୍ତ କର୍ମ ଯେହୁ ଆଚରେ
ସେ ହିଁ ପରମ ପଦ ଲାଭ କରେ । ।। ୧୯ ।।

କର୍ମ ହିଁ କରି ଜନକାଦି ଜନ
କଲେ ନିଶ୍ଚୟ ସିଦ୍ଧି ଅର୍ଜନ ।
ସାଧିବା ପାଇଁ ମଧ୍ୟ ଲୋକହିତ
ଉତ୍ତମ କର୍ମ କରିବା ବିହିତ । ।। ୨୦ ।।

ଶ୍ରେଷ୍ଠ ନର ଯାହା ବା ଆଚରଇ
ଇତର ଜନ ତାହା ହିଁ କରଇ
ସେ ଯାହା କରଇ ଅବଧାରଣ
ଜଗତ କରେ ତା ଅନୁସରଣ । ।। ୨୧ ।।

ତ୍ରିଲୋକରେ ମୋର ନାହିଁ, ହେ ପାର୍ଥ,
କିଛି ଅପ୍ରାପ୍ତ, ବା ପ୍ରାପ୍ୟ ପଦାର୍ଥ ।
ନାହିଁ ବା ମୋର କରଣୀୟ କିଛି,
ତଥାପି ମୁହିଁ କର୍ମେ ହିଁ ଲାଗିଛି । ।। ୨୨ ।।

ଯେବେ, ହେ ପାର୍ଥ, ମୁଁ ଅଳସପଣେ
କେବେ କର୍ମ ନ କରିବି ଆପଣେ,
ତେବେ ଜଗତଯାକ ସବୁ ମତେ
ହେବେ ନାହିଁ କି ପଥିକ ମୋ ପଥେ । ॥ ୨୩ ॥

ଯେବେ ବା ମୁହିଁ କରମ ନ କରେ
ତେବେ ଉଚ୍ଛନ୍ନ କରିବି ଲୋକରେ ।
ମୋ ସକାଶୁଁ ଜନମିବେ ସଙ୍କର
ତେଣୁ ନଷ୍ଟ କରିବି ପ୍ରଜାଙ୍କର । ॥ ୨୪ ॥

ମୂର୍ଖେ କରମାସକ୍ତ ହୋଇ, ଭାରତ,
ରହନ୍ତି ଯଥା ସଦା କର୍ମରତ,
ଲୋକହିତ ଇଚ୍ଛୁକ ବିଦ୍ୱାନନ୍ତ
ଅନାସକ୍ତ କର୍ମ କରୁ ତେମନ୍ତ । ॥ ୨୫ ॥

କର୍ମପ୍ରବୃତ୍ତ ଅଜ୍ଞଙ୍କର ଚିତ୍ତ
ବିଭ୍ରାନ୍ତ କରାଇବା ଅନୁଚିତ ।
ବିଦ୍ୱାନ ଭଲେ ହୋଇ ଅବହିତ
କର୍ମେ ନିଯୁକ୍ତ ରହିବା ବିହିତ । ॥ ୨୬ ॥

ପ୍ରକୃତି ଗୁଣ କର୍ତ୍ତୃକ ନିଶ୍ଚୟ
ସାଧିତ ହୁଏ କରମ ନିଚୟ ।
ବିମୂଢ଼ ଜନେ ଅହଂକାର ମତି
ଆପଣାକୁ କର୍ତ୍ତା ବୋଲି ମଣନ୍ତି । ॥ ୨୭ ॥

ଗୁଣକର୍ମତତ୍ତ୍ୱକୁ ଯେ ଜାଣନ୍ତି
ହେ ମହାବାହୁ, ସେ ମଧ୍ୟ ମାନନ୍ତି ।
ଗୁଣଗଣ ଯିନା ଗୁଣେ ରହନ୍ତି
ତହିଁ ଆପଣେ ଜଡ଼ିତ ନୁହଁନ୍ତି ॥ ୨୮ ॥

ଅଧ୍ୟାୟ-୩ (୨୯-୩୪)

ପ୍ରକୃତିର ଗୁଣେ ହୋଇ ମୋହିତ
ମୂର୍ଖ ଗୁଣକର୍ମେ ରହେ ଜଡ଼ିତ ।
ସେ ମୂର୍ଖଙ୍କୁ ତହିଁରୁ ବିଚଳିତ
କରିବା ଜ୍ଞାନୀ ପକ୍ଷେ ଅନୁଚିତ । ॥ ୨୯ ॥

କରି ଅଧ୍ୟାତ୍ମଚେତନା ଅର୍ଜନ,
ମୋଠାରେ କରି କର୍ମ ବିସର୍ଜନ,
ଆଶା ମମତା ନ ରଖି ନିକର
ନେଇକି ଶୋଚନ ଆୟୋଧନ କର । ॥ ୩୦ ॥

ଯେ ଶ୍ରଦ୍ଧାବନ୍ତ ନର ସବୁବେଳେ
ଅସୂୟା ନ ପୋଷି ମନରେ ଭଲେ
ମୋର ଏହି ମତକୁ ପରିପାଳେ
ସେ ମଧ୍ୟ କର୍ମବନ୍ଧନୁ ମୁକୁଳେ । ॥ ୩୧ ॥

ମୋର ଏ ମତକୁ ନିନ୍ଦା ଅପରେ
ଯେ ଅବା ପରିପାଳନ ନ କରେ
ଜ୍ଞାନ ବର୍ଜିତ-ବିମୂଢ଼ ସେ ଲୋକ
ସେ ନଷ୍ଟ ଆବର ସେ ଅବିବେକ । ॥ ୩୨ ॥

ଜ୍ଞାନବନ୍ତ ମଧ୍ୟ ସ୍ୱୀୟ ପ୍ରକୃତି
ଅନୁରୂପେ ସମ୍ପାଦନ୍ତି ସ୍ୱକୃତି ।
ପ୍ରକୃତି ଅନୁବର୍ତ୍ତୀ ଯେତେ ଜୀବେ
ସେ କି ଇନ୍ଦ୍ରିୟ ନିଗ୍ରହ କରିବେ ? ॥ ୩୩ ॥

ସବୁ ଇନ୍ଦ୍ରିୟର ସ୍ୱସ୍ୱ ବିଷୟେ
ଥାଏ ସ୍ନେହ ବା ଦ୍ୱେଷ ନିଃସଂଶୟେ ।
ଅର୍ଜୁନ ନୁହଁ ସ୍ନେହର ଦ୍ୱେଷର
ସେ ଦୁହେଁ ନିଜ ଦ୍ୱିଷ ମଣିଧର । ॥ ୩୪ ॥

ସୁସମ୍ପନ୍ନ ପରଧର୍ମଠୁଁ, ଶୁଣ,
ସ୍ୱଧର୍ମ ଶ୍ରେୟ, ହେଲେହେଁ ବିଗୁଣ ।
ସ୍ୱଧର୍ମେ ନିଧନ ହିଁ ଶ୍ରେୟସ୍କର ।
ଭୟାବହ ପରଧର୍ମ ନକର । ॥ ୩୫ ॥

## ଅର୍ଜୁନ କହିଲେ :-

ହେ ବାର୍ଷ୍ଣେୟ, ଏବେ କହ କିପରି
ବଳାତ୍କାରେ ନିଯୁକ୍ତ ହେବା ପରି
ଇଚ୍ଛା ନ ଥାଇଁ, କାହା ବଶ ରହି,
ଏହି ମଣିଷ ପାପ ଆଚରଇ ? ॥ ୩୬ ॥

## ଶ୍ରୀକୃଷ୍ଣ କହିଲେ :-

ଏହି କାମ ଆର କ୍ରୋଧ ଉଭୟ
ରଜୋଗୁଣରୁ ହୁଅନ୍ତି ଉଦୟ ।
ଏ ଦୁହେଁ ମହାଦୁଷ୍ଟ ସର୍ବଭକ୍ଷ
ଇହଲୋକରେ ସବୁରି ବିପକ୍ଷ । ॥ ୩୭ ॥

ନିଆଁକୁ ଧୂଆଁ ଘୋଡ଼ାଏ ଯେସନେ,
ଧୂଳି ଆଚ୍ଛାଦେ ତଥା ଦରପଣେ,
ଭ୍ରୂଣେ ଜରାୟୁ ଆଚ୍ଛାଦିବା ମତେ
ସେହି ଆଚ୍ଛାଦଇ ଏହି ଜଗତେ । ॥ ୩୮ ॥

କାମ ଟି ଅତୃପ୍ତ ଅନଳ ପରି
ଜ୍ଞାନୀଜନଙ୍କର ସେ ଚିର ଅରି ।
ସେହି ହିଁ ଆଚ୍ଛନ୍ନ କରୁଥାଇ ଜ୍ଞାନ
ହେ କୌନ୍ତେୟ, କର ତ ଅବଧାନ । ॥ ୩୯ ॥

ବୁଦ୍ଧି, ମନ ପୁଣ ଇନ୍ଦ୍ରିୟମାନ
ଜାଣ ଏହାର ଅଧିଷ୍ଠାନ ଥାନ ।
ତାଙ୍କ ଦ୍ୱାରା କାମ ଜ୍ଞାନେ ଘୋଡ଼ାଇ
ଦେହୀଙ୍କୁ ବିମୋହିତ କରୁଥାଇ । ॥ ୪୦ ॥

ଏହି ସକାଶୁଁ ମୂଳରୁଁ, ଭରତ,
ଇନ୍ଦ୍ରିୟଚୟଙ୍କୁ କରି ସଂଯତ
ଜ୍ଞାନବିଜ୍ଞାନ ବିନାଶୀ ଏ ଦୁଷ୍ଟ
କାମକୁ ତୁମ୍ଭେ କରିଯାଅ ନଷ୍ଟ । ॥ ୪୧ ॥

ଶ୍ରେଷ୍ଠ ବୋଲନ୍ତି ଇନ୍ଦ୍ରିୟ ନିଚୟ,
ଇନ୍ଦ୍ରିୟ ହୁଁ ମନ ଶ୍ରେଷ୍ଠ ନିଶ୍ଚୟ,
ମନ ଅପେକ୍ଷା ବୁଦ୍ଧି ଶ୍ରେଷ୍ଠତର
ବୁଦ୍ଧିଠାରୁ ଆତ୍ମା ଶ୍ରେଷ୍ଠ ନିକର । ॥ ୪୨ ॥

ବୁଦ୍ଧି ହୁଁ ଆତ୍ମା ଶ୍ରେଷ୍ଠ ବୋଲି ଜାଣ
ଆତମାକୁ ଆପଣେ କରି ତ୍ରାଣ
ହେ ମହାବାହୁ, ଏହି କାମରୂପ
ଦୁର୍ଦ୍ଧର୍ଷ ଶତ୍ରୁର କର ବିଲୋପ । ॥ ୪୩ ॥

# ଚତୁର୍ଥ ଅଧ୍ୟାୟ

(୧)

## ( ଜ୍ଞାନ ଯୋଗ )

**ଶ୍ରୀକୃଷ୍ଣ କହିଲେ :-**

ବିନାଶହୀନ ଏ ଯୋଗକୁ ମୁହିଁ,
ପୂର୍ବେ ବିବସ୍ୱାନଙ୍କୁ ଥିଲି କହି ।
ବିବସ୍ୱାନ କହିଥିଲେ ମନୁଙ୍କୁ
ମନୁଙ୍କଠାରୁ ଶୁଣିଲେ ଇକ୍ଷ୍ୱାକୁ । ॥ ୧ ॥

ହେଲେ ଏ ରୂପେ ଏହି ଯୋଗଦର୍ଶୀ
ପରଂପରା କ୍ରମେ ବହୁ ରାଜର୍ଷି ।
ହେ ପରଂତପ, ଦୀର୍ଘ କାଳ ଗତେ
ଏହା ଲୁପ୍ତ ହୋଇଥିଲା ଜଗତେ । ॥ ୨ ॥

ତୁମ୍ଭଙ୍କୁ ଆଜି ଯା କଲି ବଖାଣ
ଏହିଟି ହିଁ ସେହି ଯୋଗ ପୁରାଣ
ତୁମ୍ଭେ ମୋ ଭକ୍ତ ତଥା ମିତ୍ର ବୋଲି
ଏହି ଅତି ଗୁହ୍ୟ ତତ୍ତ୍ୱ କହିଲି । ॥ ୩ ॥

**ଅର୍ଜୁନ କହିଲେ :-**

ପୂର୍ବକାଳେ ଜାତ ବିବସ୍ୱତ ତ
ଅଥଚ ତୁମ୍ଭେ ଅଧୁନା ପ୍ରସୂତ ।
ଏହି ତତ୍ତ୍ୱଯାକ ତୁମ୍ଭେ ଅତୀତେ
କହିଛ ବୋଲି ବୁଝିବି କେମନ୍ତେ ? ॥ ୪ ॥

**ଶ୍ରୀକୃଷ୍ଣ କହିଲେ :-**

ମୋର ତୁମ୍ଭର ଜନମ ବହୁତ
ହେ ଅର୍ଜୁନ, ହୋଇଲାଣି ତ ଗତ,
ପୂର୍ବଜନ୍ମ ମୋର ସ୍ମୃତିରେ ଅଛି,
ତୁମ୍ଭେ ପାସୋରିଛ, ହେ ସବ୍ୟସାଚି । ॥ ୫ ॥

ହେଲେ ହେଁ ଅଜ, ଅବ୍ୟୟ ଆବର
ସବୁ ପ୍ରାଣୀଙ୍କ ହେଲେହେଁ ଈଶ୍ୱର,
ସ୍ୱୀୟ ପ୍ରକୃତିକୁ କରି ସ୍ୱୀକାର
ସ୍ୱ ମାୟାରେ ମୁଁ ହୁଏ ଅବତାର । ॥ ୬ ॥

ଯେବେ ଯେବେ ଧର୍ମେ ଗ୍ଳାନି ପ୍ରକଟେ
ଅଧର୍ମର ବା ଅଭ୍ୟୁତ୍ଥାନ ଘଟେ
ସେ ସମୟେ ଅବଶ୍ୟ, ହେ ଭାରତ
ଆପଣାକୁ ମୁଁ କରୁଥାଏ ଜାତ । ॥ ୭ ॥

ସାଧୁଙ୍କର ପରିତ୍ରାଣ ସକାଶ
ସାଧିବାକୁ ଦୁଷ୍କର୍ମୀଙ୍କ ବିନାଶ
ଧର୍ମ ସଂସ୍ଥାପନା ନିମନ୍ତେ ଆର
ଯୁଗେ ଯୁଗେ ମୁଁ ହୁଏ ଅବତାର । ॥ ୮ ॥

ଦିବ୍ୟ ମୋ ଜନମ ପୁଣି କରମ
ବୋଲି ଏମନ୍ତେ ବୁଝେ ଯେ ମରମ
ସେ ମୋତେ ଲଭେ ତେଜିଲେ ଶରୀର
ଅର୍ଜୁନ, ଆନ ଜନ୍ମ ନାହିଁ ତାର । ॥ ୯ ॥

ସ୍ନେହ-ଭୟ-କ୍ରୋଧ ହୋଇ ମୁକତ
ବହୁ ଜ୍ଞାନତପପୂତ ଲୋକ ତ,
ମୋତେ ହିଁ ଚିନ୍ତି ନେଇ ମୋ ଆଶ୍ରୟ
ମୋ ଭାବ ଲଭିଅଛନ୍ତି ନିଶ୍ଚୟ । ॥ ୧୦ ॥

ମୋ ପାଶକୁ ଆସେ ଯଥା ଯେ ଜନ
ସେ ହୁଏ ତଥା ମୋ କୃପା ଭାଜନ
ହେ ପାର୍ଥ, ସର୍ବଥା ମନୁଷ୍ୟଗଣ
କରନ୍ତି ମୋ ମାର୍ଗ ଅନୁସରଣ । ॥ ୧୧ ॥

ଯେଣୁ କର୍ମଜନିତ ସିଦ୍ଧି ଫଳ
ମରତ ଲୋକେ ମିଳଇ ଚଞ୍ଚଳ
କର୍ମଜ ସିଦ୍ଧି ଯେ ଅଭିଳାଷନ୍ତି
ଇହରେ ଦେବଙ୍କୁ ଯଜ୍ଞେ ତୋଷନ୍ତି । ॥ ୧୨ ॥

ଗୁଣର କର୍ମର ବିଭାଗରୁ ହିଁ
ଚାରିବର୍ଣ୍ଣ ସୃଷ୍ଟି କରିଛି ମୁହିଁ ।
ହେଲେ ହେଁ ଚାରି ବର୍ଣ୍ଣର କାରଣ
ମୁଁ ଅକର୍ତ୍ତା ଅବ୍ୟୟ ବୋଲି ଜାଣ । ॥ ୧୩ ॥

ମୋତେ ନ ଛୁଅନ୍ତି କର୍ମ ସକଳ,
ସ୍ପୃହା ମୁଁ ନ କରେ କର୍ମଜଫଳ ।
ମୋତେ ଯେ ନିଶ୍ଚେ ଜାଣେ ଏ ପ୍ରକାରେ
ତାକୁ କେବେଁ କର୍ମ ବାନ୍ଧି ନପାରେ । ॥ ୧୪ ॥

ଅତୀତେ ମଧ୍ୟ ଏହା ବୁଝି ଭଲେ
ମୁମୁକ୍ଷୁମାନେ ତ କରମ କଲେ ।
ତେଣୁ ପ୍ରାକ୍ତନ ପୂର୍ବଜଙ୍କ ସମ
ତୁମ୍ଭେ ଆଚରଣ କର କରମ । ॥ ୧୫ ॥

କିସ କରମ ? କିସ ଅକରମ ?
ଏଥିବି ବୁଧଙ୍କ ବି ହୁଏ ଭରମ ।
ସେ କର୍ମ କଥା କହୁଛି ବଖାଣି,
ଅଶୁଭରୁ ମୁକୁଳିବ ଯା ଜାଣି । ॥ ୧୬ ॥

କର୍ମ କଥା ବିକର୍ମ କଥା ତଥା
ଅକର୍ମ କଥା ବୋଦ୍ଧବ୍ୟ ସର୍ବଥା ।
ଯେଣୁ ସବୁମତେ କର୍ମର ଗତି
ଭଲେ ସମଝିବା ଗହନ ଅତି । ॥ ୧୭ ॥

ଯେ ଦେଖି ପାରେ ଅକର୍ମ କର୍ମରେ
ଅକର୍ମେ ଯେ ଦେଖେ କର୍ମ ଅପରେ
ମନୁଷ୍ୟ ମଧ୍ୟେ ଧୀମନ୍ତ ସେ ଲୋକ
ସେ ହିଁ ଯୋଗୀ ସର୍ବକର୍ମସାଧକ । ॥ ୧୮ ॥

ଯାର ଯାବତ ଉଦ୍‌ଯୋଗେ ଆବର
ନ ଥାଏ କାମନା ଫଳଲଭର
ଜ୍ଞାନବହ୍ନି ଯା କର୍ମେ ପୋଡ଼ିଦଏ
ତାକୁ ପଣ୍ଡିତ ବୋଲନ୍ତି ସୁଧୀଏ । ॥ ୧୯ ॥

ଯେ କର୍ମଫଳେ ଆସଙ୍ଗ ବରଜେ
ନିରାଶ୍ରୟତ୍ ନିତ୍ୟ ତୃପ୍ତି ଭଜେ
ଆଚରିଲେ ହିଁତା ସେ କର୍ମମାନ
କିଛୁ ହିଁ କରେ ନାହିଁ ବୋଲି ଜାଣ । ॥ ୨୦ ॥

ଯେ କରି ପରିହାର ପରିଗ୍ରହେ
ସ୍ୱଚିତ୍ତେ ସଂଯମି ନିଷ୍କାମ ରହେ
ସେ କେବଳ ଦେହଧାରଣ ପାଇଁ
କଲେ ହେଁ କର୍ମ ପାପ ପାଏ ନାହିଁ । ॥ ୨୧ ॥

ଅନାୟାସଲବ୍ଧେ ଯେ ତୁଷ୍ଟଚିତ୍ତ,
ନିର୍ଦ୍ୱନ୍ଦ୍ୱ ତଥା ମତ୍ସର ବର୍ଜିତ,
ସିଦ୍ଧି ଅସିଦ୍ଧିକି ଯେ ସମ ମଣେ
ସେ କର୍ମ କଲେ ନ ପଡ଼େ ବନ୍ଧନେ । ॥ ୨୨ ॥

ଯେ ଆସକ୍ତି ଶୂନ୍ୟ ମୁକ୍ତ ଯେ ଆର
ପୁଣି ଜ୍ଞାନେ, ସ୍ଥିର ଚିତ୍ତ ଯାହାର
ଯଜ୍ଞାର୍ଥ କର୍ମକାରୀ ସେ ଲୋକର
କର୍ମ ଲୟପ୍ରାପ୍ତ ହୁଏ ନିକର । ॥ ୨୩ ॥

ବ୍ରହ୍ମ ଆହୁତି, ହବି, ଅଗ୍ନି ତଥା
ବ୍ରହ୍ମ ହିଁ ପୁଣି ହୋମର କରତା,
ଏ ରୂପେ କର୍ମେ ବ୍ରହ୍ମବୁଦ୍ଧି ଯାର
ବ୍ରହ୍ମ ହିଁ ଲଭ୍ୟ ହୋଇଥାଏ ତାର । ॥ ୨୪ ॥

ଦେବ ସବନ୍ଧ ଯଜ୍ଞକୁ ଆଦର
କେତେକ ଯୋଗୀ କରନ୍ତି, ଆବର
ବ୍ରହ୍ମାତ୍ମକ ଅଗ୍ନିରେ ଆଉ ଥୋକେ
ଯଜ୍ଞେ ଯଜ୍ଞହୋମ କରନ୍ତି ଲୋକେ । ॥ ୨୫ ॥

କର୍ଣ୍ଣାଦି ଇନ୍ଦ୍ରିୟଙ୍କୁ ପୁଣି ଥୋକେ
ହୋମ ଦିଅନ୍ତି ସଂଯମ-ପାବକେ ।
ଶବ୍ଦାଦିବିଷୟେ ଇନ୍ଦ୍ରିୟାନଳେ
ଆଉ କେହି ପୁଣି ଆହୁତି ଢାଳେ । ॥ ୨୬ ॥

ସକଳ ଇନ୍ଦ୍ରିୟକର୍ମକୁ କେହି,
ପୁଣି କେ ପ୍ରାଣର କର୍ମକୁ ନେଇ
ଜ୍ଞାନଦୀପିତ ଆତ୍ମସଂଯମର
ଯୋଗାନଳେ ହୋମ ଦିଅନ୍ତି ଆର । ॥ ୨୭ ॥

କେବା ଦ୍ରବ୍ୟ ଦେଇ ଯଜ୍ଞ ସମ୍ପାଦେ
ଅବା ତପେ କି ଯୋଗେ ଯଜ୍ଞ ସାଧେ ।
କେବା ସ୍ୱାଧ୍ୟାୟଜ୍ଞାନେ ଯଜ୍ଞ ଚିନ୍ତି
ଯତିଏ ଦୃଢ଼ବ୍ରତ ରହିଥାନ୍ତି । ॥ ୨୮ ॥

ଅପରେ ପ୍ରାଣାୟାମ ପରାୟଣେ
ରୁଦ୍ଧ ପ୍ରାଣପବନ ସଞ୍ଚାଳନେ ।
ହୋମ ଦିଅନ୍ତି ପ୍ରାଣକୁ ଅପାନେ
ତଥା ଦିଅନ୍ତି ଅପାନକୁ ପ୍ରାଣେ । ॥ ୨୯ ॥

ପରିମିତାହାରୀ ଅପର ନରେ
ପ୍ରାଣକୁ ହୋମ କରନ୍ତି ପ୍ରାଣରେ ।
ଏମାନେ ତ ସର୍ବେ ଯଜ୍ଞକୁଶଳ
ଯଜ୍ଞେ ନାଶିଛନ୍ତି ପାପ ସକଳ । ॥ ୩୦ ॥

ଯଜ୍ଞଶେଷ ସୁଧା କରି ଭୋଜନ
ବ୍ରହ୍ମ ସନାତନ ଲଭଇ ଜନ ।
ଅଯଜ୍ଞର ଏ ଲୋକ ନୁହେ କେଭେ
କୁରୁବର, ସେ କି ଅଧିକ ଲଭେ ? ॥ ୩୧ ॥

ଏପରି ବହୁବିଧ ଯଜ୍ଞମାନ
ବେଦବଦନେ ହୋଇଛି ବଖାଣ ।
କର୍ମଜ ବୋଲି ବୁଝ ସେ ସରବ
ଏପରି ବୁଝିଲେ ମୋକ୍ଷ ଲଭିବ । ॥ ୩୨ ॥

ପରନ୍ତପ, ଜ୍ଞାନଯଜ୍ଞ ନିଶ୍ଚୟ
ଦ୍ରବ୍ୟମୟଯଜ୍ଞ ଅପେକ୍ଷା ଶ୍ରେୟ ।
ହେ ପାର୍ଥ, ଅଖିଳକରମମାନେ
ପରିସମାପ୍ତ ହୋଇଥାନ୍ତି ଜ୍ଞାନେ । ॥ ୩୩ ॥

ତତ୍ତ୍ୱବୁଝ ପ୍ରଣିପାତ ଆଚରି,
ପରିପ୍ରଶ୍ନ ପୁଚ୍ଛି ଓ ସେବା କରି ।
ତତ୍ତ୍ୱଦରଶୀ ଜ୍ଞାନବନ୍ତମାନେ
ତୁମ୍ଭଙ୍କୁ ପ୍ରଦାନ କରିବେ ଜ୍ଞାନେ । ॥ ୩୪ ॥

ଯାହା ଜାଣିଲେ କେବେହେଁ, ପାଣ୍ଡବ,
ଏପରି ମୋହ ନ ଲଭିବ ଲବ ।
ଯଦ୍ଦ୍ୱାରା ଦେଖିବ ପ୍ରାଣୀଜଗତେ
ଆତ୍ମଗତେ, ପଛେ ମୋ ଅନ୍ତର୍ଗତେ । ॥ ୩୫ ॥

ସକଳ ପାତକୀଙ୍କଠାରୁ ନିକ
ଯେବେବା ହୁଅ ଅଧିକ ପାତକୀ
ତେବେ ବି ଜ୍ଞାନତରୀ ମାତ୍ର ଧରି
ପାତକ ବାରିଧି ପାରିବ ତରି । ॥ ୩୬ ॥

ଜ୍ୱଳନ୍ତ ଅନଳ ଇନ୍ଧନେ ଯଥା
ଭସ୍ମସାତ କରିଥାଏ ସର୍ବଥା ।
ହେ ଅର୍ଜୁନ, ତଥା ଜ୍ଞାନ-ଅନଳ
ଭସ୍ମସାତ କରେ କର୍ମ ସକଳ । ॥ ୩୭ ॥

ଇହଲୋକେ ନାହିଁ ଜ୍ଞାନ ସମାନ
ପବିତ୍ର ହୋଇ ନାହିଁ କିଛି ଆନ ।
ଯଥାକାଳେ ଯୋଗସଂସିଦ୍ଧ ଜାଣ
ଲଭିପାରଇ ଆତ୍ମାରେ ସେ ଜ୍ଞାନ । ॥ ୩୮ ॥

ଯେ ସଂଯତେନ୍ଦ୍ରିୟ ଶ୍ରଦ୍ଧାବାନ
ଯେ ତତ୍ପର ସେହିଁ ଲଭେ ଜ୍ଞାନ ।
ଲଭି ସେ ଜ୍ଞାନ ଅଚିରେ ନିଜ
ଲାଭ କରଇ ପରମ ଶାନ୍ତିକ । ॥ ୩୯ ॥

ଶ୍ରଦ୍ଧାରହିତ ସଂଶୟାତ୍ମା ଅଜ୍ଞାନ
ମନୁଷ୍ୟ ବିନଷ୍ଟ ହୁଅଇ ଜାଣ ।
ଏହି ଲୋକେ କି ପରଲୋକେ ଲଭେ
ସଂଶୟାତ୍ମା କେବେ ସୁଖ ନ ଲଭେ । ॥ ୪୦ ॥

ଯୋଗେ ଯେ କର୍ମେ ଅର୍ପିଛି ଈଶ୍ୱରେ
ଜ୍ଞାନେ ସଂଶୟ ଛେଦିଛି ଅପରେ
ସେ ଆତ୍ମବନ୍ତକୁ ତା କର୍ମଚୟ
ବାନ୍ଧି ନ ପାରନ୍ତି, ହେ ଧନଞ୍ଜୟ । ॥ ୪୧ ॥

ଭାରତ, ତେଣୁ ହୋଇ ଉତ୍ତିଷ୍ଠିତ
ସ୍ୱହୃଦସ୍ଥିତ ଅଜ୍ଞାନ ପ୍ରସୂତ
ସଂଶୟକୁ ଛେଦ ଜ୍ଞାନ-କୃପାଣେ
ଯୋଗର ଆଶ୍ରୟ ନିଅ ଆପଣେ । ॥ ୪୨ ॥

# ପଞ୍ଚମ ଅଧ୍ୟାୟ

(୧-୫)

## ( ସନ୍ନ୍ୟାସ ଯୋଗ )

### ଅର୍ଜୁନ କହିଲେ :-

ହେ କୃଷ୍ଣ, କର୍ମସନ୍ନ୍ୟାସର ପୁଣ
କର୍ମଯୋଗର ପ୍ରଶଂସା ବଖାଣ ।
ଏ ଦୁଇ ମଧ୍ୟରୁ ଯେଉଁଟି ଶ୍ରେୟ
ତାହା ମୋତେ କହ କରି ନିଶ୍ଚୟ । ॥ ୧ ॥

### ଶ୍ରୀକୃଷ୍ଣ କହିଲେ :-

ସନ୍ନ୍ୟାସ ଆଉ କର୍ମଯୋଗ ତଥା
ପରମ ଶ୍ରେୟସ୍କର ବେନି କଥା ।
ଦୁଇ ମଧ୍ୟେ କର୍ମଯୋଗ ଆବର
କର୍ମସନ୍ନ୍ୟାସଠାରୁ ଶ୍ରେଷ୍ଠତର । ॥ ୨ ॥

ଯାର ନାହିଁ ଦ୍ୱେଷ, ଦ୍ୱନ୍ଦ୍ୱ, ଆକାଂକ୍ଷା
ତାକୁ ଯୋଗ୍ୟ ନିତ୍ୟ ସନ୍ନ୍ୟାସୀ ଆଖ୍ୟା ।
ହେ ମହାବାହୁ, ଭବବନ୍ଧନରୁ ସେ
ମୁକତ ହୋଇ ଲଭେ ଅନାୟାସେ । ॥ ୩ ॥

ସାଂଖ୍ୟ ଯୋଗ ଭିନ୍ନ ବୋଲି ବଧିରେ
ବୋଲନ୍ତି ଅଜ୍ଞେ, ନ ବୋଲନ୍ତି ଧୀରେ ।
କଲେ ଏକକୁ ବି ଭଲେ ଆଶ୍ରୟ
ଫଳ ଉଭୟର ମିଳେ ନିଶ୍ଚୟ । ॥ ୪ ॥

ସାଂଖ୍ୟବାଦୀ ଯେ ସ୍ଥାନକୁ ପାଆନ୍ତି
ତଦ୍ଭିନ୍ନ କର୍ମଯୋଗୀ ବି ପାଆନ୍ତି,
ସାଂଖ୍ୟ ଆଉ ଯୋଗେ ଯେ ସମ ମଣେ
ସେହିଁ ସିନା ଗଣ୍ୟ ବିଚକ୍ଷଣେ । ॥ ୫ ॥

ହେ ମହାବାହୁ, କର୍ମଯୋଗ ବିନା
ସନ୍ୟାସଲାଭ କଷ୍ଟସାଧ୍ୟ ଜନା,
ସେଥିଁ ମୁନି କର୍ମଯୋଗ ଆଦରେ
ତ୍ୱରିତ ଲଭେ ସେ ବ୍ରହ୍ମପଦ ରେ । ॥ ୬ ॥

ଯେ ବା କର୍ମନିଯୁକ୍ତ, ଶୁଦ୍ଧଚିତ୍ତ,
ଜିତାତ୍ମା ଆଉ ଇନ୍ଦ୍ରିୟଜିତ
ସର୍ବ ଭୂତେ ଯେ ମଣେ ଆତ୍ମାସମ
ଲିପ୍ତ ନୁହେଁ ସେ କଲେହେଁ କରମ । ॥ ୭ ॥

ଦର୍ଶନ, ଶ୍ରବଣ, ଘ୍ରାଣ, ସ୍ପର୍ଶନ,
ଅଶନ, ଗମନ, ସ୍ୱପ୍ନ, ଶ୍ୱସନ,
ଭାଷଣ, ଗ୍ରହଣ ବା ବିସର୍ଜନ
ନୟନ ନିମୀଳନ-ଉନ୍ମୋଚନ ।

ଏମନ୍ତ କେତେ କର୍ମ କଲେ ହେଲେ
ତତ୍ତ୍ୱବେତ୍ତା ଯୋଗୀ ଜାଣେ ତ ଭଲେ
ବିଷୟେ ଅଛନ୍ତି ଇନ୍ଦ୍ରିୟଗଣେ,
'ମୁଁ କିଛି କରୁନାହିଁ' ବୋଲି ମଣେ । ॥ ୮, ୯ ॥

ଆତ୍ମାକୁ କରି ସେ ବ୍ରହ୍ମେ ଅର୍ପଣ
କରେ କର୍ମ ତେଜି ଆସକ୍ତି ପଣ ।
ପାପ ଲାଗେ ନାହିଁ ତାକୁ ସର୍ବଥା
ପଦ୍ମଦଳେ ଜଳ ନ ଲାଗେ ଯଥା । ॥ ୧୦ ॥

ଚିତ୍ତ ଆସକ୍ତି ତେଜି ଆତ୍ମ ଶୁଦ୍ଧି
ଖଟାଇ ମାତ୍ର ଦେହ, ମନ, ବୁଦ୍ଧି,
ଆଉର ଇନ୍ଦ୍ରିୟ କର୍ତ୍ତୃକ ପୁଣ
ସବୁ କର୍ମ କରନ୍ତି ଯୋଗୀଗଣ । ॥ ୧୧ ॥

ଯୋଗଯୁକ୍ତ ଛାଡ଼ି କରମ ଫଳ
ଲଭଇ ପରମ ଶାନ୍ତି ସକଳ
କାମନା ହେତୁ ହୋଇ ଫଳାସକ୍ତ
ବନ୍ଧନରେ ପଡ଼େ ଜନ ଅଯୁକ୍ତ । ॥ ୧୨ ॥

ମନ କର୍ତ୍ତୃକ ଜିତେନ୍ଦ୍ରିୟ ଜନ
ସରବ କର୍ମକୁ କରି ବର୍ଜନ ।
କିଛୁ ନ କରି ପୁଣି ନ କରାଇ
ନବଦ୍ୱାରପୁରେ ସୁଖରେ ଥାଇ । ॥ ୧୩ ॥

ଏ ଲୋକରେ କର୍ତ୍ତୃତ୍ୱ, କର୍ମମାନେ,
କର୍ମଫଳର ସଂଯୋଗ ସମେତେ
ପ୍ରଭୁ ତ ସର୍ଜନ କରନ୍ତି ନାହିଁ
ସ୍ୱଭାବ ସିନା ପ୍ରବର୍ତ୍ତଇ ତହିଁ । ॥ ୧୪ ॥

କାହାରି ପାତକେ ସୁକୃତେ ତଥା
ବିଭୁ ନଅନ୍ତି ନାହିଁତ ସର୍ବଥା ।
ଜ୍ଞାନ ନାଙ୍କି ଘୋଡ଼ିବାରୁ ଅଜ୍ଞାନେ
ମୋହଗ୍ରସ୍ତ ହୁଅନ୍ତି ପ୍ରାଣୀମାନେ । ॥ ୧୫ ॥

ଯାହାଙ୍କର ଆତ୍ମଜ୍ଞାନ କର୍ତ୍ତୃକ
ବିନଷ୍ଟ ହୁଏ ସେ ଅଜ୍ଞାନମାନ
ଜ୍ଞାନ ତାଙ୍କର ଭାସ୍କର ସକାଶ
ପରମତତ୍ତ୍ୱରେ କରେ ପ୍ରକାଶ । ॥ ୧୬ ॥

ସେଇଁ ପ୍ରଭୁପରାୟଣ ସକଳେ
ତଦ୍‌ଗତ ବୁଦ୍ଧି-ଆତ୍ମା-ନିଷ୍ଠା ଫଳେ
ଜ୍ଞାନେ ପାପ ପ୍ରକ୍ଷାଳନ କରନ୍ତି
ଅଣଲେଉଟାଣି ପଥେ ଚରନ୍ତି । ॥ ୧୭ ॥

ବିଦ୍ୟାବିନୟସମ୍ପନ୍ନ ବ୍ରାହ୍ମଣେ,
ଗୋରୁକୁ ହସ୍ତୀକି ଚଣ୍ଡାଳେ ଶ୍ୱାନେ
ସବୁଙ୍କୁ ପଣ୍ଡିତେ ସମ ଦୃଷ୍ଟିରେ
ଦେଖୁଥାନ୍ତି ସଦା ଏହି ସୃଷ୍ଟିରେ । ॥ ୧୮ ॥

ସାମ୍ୟଭାବେ ସ୍ଥିତ ଯାହାର ଚିତ୍ତ
ଭବ ଜନମକୁ ସେ ଜିଣିଛି ତ ।
ବ୍ରହ୍ମ ନିର୍ଦ୍ଦୋଷ ଓ ସମ ନିଶ୍ଚିତ
ତେଣୁ ବ୍ରହ୍ମରେ ସେ ହୁଅଇ ସ୍ଥିତ । ॥ ୧୯ ॥

ଯେ ବ୍ରହ୍ମବେତ୍ତା ପୁଣି ବ୍ରହ୍ମନିଷ୍ଠ
ପ୍ରିୟ ପଦାର୍ଥ ପାଇ ନୋହେ ହୃଷ୍ଟ
ଅପ୍ରିୟ ବା ଲଭି ନୋହେ ଉଦ୍‌ବେଗ,
ସେ ସ୍ଥିର ବୁଦ୍ଧି, ନୋହେ ମୋହମଗ୍ନ । ॥ ୨୦ ॥

ବାହ୍ୟସ୍ପର୍ଶ ବିଷୟେ ଯେ ବିମୁଖ
ସେ ଲଭେ ଅନ୍ତଃକରଣରେ ସୁଖ ।
ସେ ବ୍ରହ୍ମଯୋଗଯୁକ୍ତାତ୍ମା ନିଶ୍ଚୟ
ନିତ୍ୟ ଭୋଗେ ଅକ୍ଷୟ ସୁଖଚୟ । ॥ ୨୧ ॥

ବାହ୍ୟସ୍ପର୍ଶଜାତ ଭୋଗ ସକଳ
ନୈମିତ୍ୟ, ଦୁଃଖଜନକ କେବଳ ।
ସେ ସମସ୍ତ ଆଦ୍ୟନ୍ତବନ୍ତ ନିଜ
ବୁଧେ ଏଥି ନ ବଳାନ୍ତି ତହିଁକି । ॥ ୨୨ ॥

ଯେଉଁ ମନୁଷ୍ୟ ଇହଲୋକେ ଜାଣ
ସ୍ୱୀୟ ଶରୀରେ ଥିଲାଯାଏ ପ୍ରାଣ
କାମକ୍ରୋଧଜ ବେଗ ପାରେ ସହି
ସେହି ହିଁ ଯୋଗୀ, ସୁଖୀ ଏକା ସେହି । ॥ ୨୩ ॥

ଅଧ୍ୟାୟ-୫ (୨୪-୨୯)

ଅନ୍ତରେ ହିଁ ଯାର ସୁଖ-ବିଳାସ
ତଥା ଯା ଅନ୍ତରେ ଜ୍ୟୋତିପ୍ରକାଶ
ଆପଣେ ବ୍ରହ୍ମଭୂତ ହୋଇ ଜାଣ
ସେ ଯୋଗୀ ଲଭଇ ବ୍ରହ୍ମନିର୍ବାଣ । ॥ ୨୪ ॥

ଯେ ଋଷିଏ ଦ୍ୱୈଧଚ୍ୟୁତ ସଯତ
ସର୍ବଭୂତ-ହିତରତ ନିରତ
କଲ୍ମଷ ବର୍ଜିତ ସେ ଋଷିଗଣ
ଲାଭ କରିଥାନ୍ତି ବ୍ରହ୍ମନିର୍ବାଣ । ॥ ୨୫ ॥

ଯେଉଁ ଯତିଏ କାମକ୍ରୋଧମୁକ୍ତ
ସଂଯତ ଚେତା, ଆତ୍ମଜ୍ଞାନଯୁକ୍ତ
ସେହି ଯତିଗଣ ଲଭନ୍ତି ଜାଣ
ସର୍ବ ଅବସ୍ଥାରେ ବ୍ରହ୍ମନିର୍ବାଣ । ॥ ୨୬ ॥

ବାହ୍ୟ ସର୍ବାଙ୍ଗିକାସ୍ପ ଦୂର କରି
ଦୃଢ ଭ୍ରୂମଧ୍ୟେ ଦୃଷ୍ଟିକୁ ଧରି
ନାସାନ୍ତର ପ୍ରାଣ-ଅପାନରେ
କୁମ୍ଭକ ସାଧି ରଖି ସମାନରେ ।

ଇନ୍ଦ୍ରିୟ-ମନ-ବୁଦ୍ଧି ଜେତା ପୁଣି
ଇଚ୍ଛା-ଭୟ-କ୍ରୋଧ ଶୂନ୍ୟ ଯେ ସ୍ଥିତ
ସେହି ମୋକ୍ଷପରାୟଣ ନିୟତ
ସେ ହିଁ କେବଳ ମୁକତ ନିରତ । ॥ ୨୭, ୨୮ ॥

ଯଜ୍ଞ ଆଉ ତପର ଭୋଗକର୍ତ୍ତା,
ସକଳଲୋକର ପରମ ଭର୍ତ୍ତା
ସବୁ ପ୍ରାଣୀଙ୍କର ସୁହୃଦ ଭାବେ
ମୋତେ ଯେ ବୁଝେ, ସେ ହିଁ ଶାନ୍ତି ଲଭେ । ॥ ୨୯ ॥

—X—

# ଷଷ୍ଠ ଅଧ୍ୟାୟ (୧-୫)

## ( ଧ୍ୟାନ ଯୋଗ )

**ଶ୍ରୀକୃଷ୍ଣ କହିଲେ :-**

ଭରସା ନ କରି କରମ ଫଳେ
ଯେ ବା ସାଧଇ ସ୍ୱକର୍ତ୍ତବ୍ୟ ଭଲେ,
ସେହିଁ ସନ୍ନ୍ୟାସୀ ସେହି ମଧ୍ୟ ଯୋଗୀ
ତା ନୁହେ ନିରଗ୍ନିକ କର୍ମତ୍ୟାଗୀ । ॥ ୧ ॥

ସନ୍ନ୍ୟାସ ନାମେ ଯାହା ଅଭିହିତ,
ପାଣ୍ଡବ, ଜାଣ ଯୋଗ ତାହା ହିଁ ତ ।
ଯେ ସଂକଳ୍ପ କରି ନାହିଁ ବର୍ଜନ
ସେ ତ ଯୋଗୀ ନୁହଇ କଦାଚନ । ॥ ୨ ॥

ଯୋଗ ଆରୋହଣେଚ୍ଛୁ ମୁନିଙ୍କର
କାରଣ ବୋଲନ୍ତି କର୍ମ ନିକର ।
ଯୋଗାରୂଢ଼ ମୁନିମାନଙ୍କ ଜାଣ
କର୍ମନିବୃତ୍ତି ହୁଅଇ କାରଣ । ॥ ୩ ॥

ଯେବେ ସର୍ବସଂକଳ୍ପତ୍ୟାଗୀ କେହି
ଶବ୍ଦାଦି ବିଷୟେ ଆସକ୍ତ ନୋହି
କର୍ମରେ କିମ୍ବା ନୁହେଁ ଆସକତ
ସେ ହିଁ ଯୋଗାରୂଢ଼ ନାମେ ବିଦିତ । ॥ ୪ ॥

ଆତ୍ମାତେ କରିବ ଆତ୍ମା ଉଦ୍ଧାର,
ଆତ୍ମାକୁ ଖସାଇବ ନାହିଁ ଆର,
ଆତ୍ମାହିଁ ଆତ୍ମାର ବନ୍ଧୁ ପ୍ରମାଣ
ଆତ୍ମା ପୁଣି ଆତ୍ମାର ଶତ୍ରୁ ଜାଣ । ॥ ୫ ॥

ଆତ୍ମାକୁ ଆତ୍ମାରେ ଯେ କରେ ଜୟ
ମିତ୍ର ତାହାର ତା ଆତ୍ମା ନିଶ୍ଚୟ ।
ଆତ୍ମଜେତା ଯେ ନୁହେଁ, ଆତ୍ମା ତାର
ଶତ୍ରୁ ତୁଲ୍ୟ କରେ ଶତ୍ରୁତାଚର । ॥ ୬ ॥

ଶୀତଉଷ୍ଣେ ସୁଖଦୁଃଖରେ ତଥା
ମାନ ଅପମାନରେ ହିଁ ସର୍ବଥା
ଆତ୍ମଜେତା ପ୍ରଶାନ୍ତର ମାଝ ହିଁ
ପରମାତ୍ମା ସମାଧିସ୍ଥ ହୁଅଇ । ॥ ୭ ॥

ଯେ ଜ୍ଞାନବିଜ୍ଞାନ ଲଭି ତୃପତ
ଯେ ମଣେ ଢେଳା-ହିରା ଏକା ମତ ।
ଯେ ଜିତେନ୍ଦ୍ରିୟ ଜନକୁ ଜଗତେ
ଯୋଗଯୁକ୍ତ ବୋଲି ବୋଲନ୍ତି ସତେ । ॥ ୮ ॥

ସୁହୃଦ-ମିତ୍ର-ଶତ୍ରୁ-ଉଦାସୀନ-
ମଧ୍ୟସ୍ଥ-ଦ୍ୱେଷୀ-ବନ୍ଧୁଠାରେ ପୁଣ
ସାଧୁଠାରେ ପାପୀଠାରେ ଆବର
ଯେ ସମଦର୍ଶୀ ସେ ହିଁ ଶ୍ରେଷ୍ଠନର । ॥ ୯ ॥

ଏକାନ୍ତରେ, ସଂଯତ କରି ଚିତ୍ତ,
ହୋଇ ବୀତକାମ, ତ୍ୟକ୍ତପରିଗ୍ରହ,
ନିର୍ଜନେ ଯୋଗୀଜନ ଅବିରତ
ଆତ୍ମାକୁ କରନ୍ତି ଯୋଗନିରତ । ॥ ୧୦ ॥

ପବିତ୍ର ସ୍ଥଳେ ରଚି କୁଶାସନ
ପାରି ଅଜିନ ଆଚ୍ଛାଦ ବସନ
ସ୍ଥାପନ୍ତି ସ୍ଥାୟୀ ଆସନଟି ତହିଁ
ଅତି ଉଚ୍ଚ ବା ଅତି ନୀଚ ନୋହି । ॥ ୧୧ ॥

ସେହି ଆସନେ ବସି ନିରବଧି,
ଚିତ୍ତ-ଇନ୍ଦ୍ରିୟ-କ୍ରିୟାକୁ ନିରୋଧି,
ଏକାଗ୍ର କରି ମନକୁ ବହନ୍ତେ
ଯୋଗ ସାଧନ୍ତି ଆତ୍ମାଶୁଦ୍ଧି ହେତେ । ॥ ୧୨ ॥

କାୟା-ଶିର-ଗ୍ରୀବା ସଳଖେ ରଖି
ନିଶ୍ଚଳେ ନାସା ଅଗ୍ରକୁ ନିରେଖି
ଏଣିକି ତେଣିକି ଚଳେ ନ ଦୃଷ୍ଟି
ଯୋଗ ସାଧନ୍ତି ଆତ୍ମାଶୁଦ୍ଧି ପାଇଁ । ॥ ୧୩ ॥

ପ୍ରଶାନ୍ତାତ୍ମା, ହୋଇ ଭୟବର୍ଜିତ
ମନ ସଂଯମି, ମୋତେ ଅର୍ପିଚିତ୍ତ,
ରହି ବ୍ରହ୍ମଚର୍ଯ୍ୟବ୍ରତତତ୍ପର
ସାଧନ୍ତି ନିକର ଯୋଗ ମତ୍ପର । ॥ ୧୪ ॥

ସୁସଂଯତଚିତ୍ତ ଯୋଗୀ ଏମନ୍ତେ
ନିଜକୁ କରନ୍ତେ ବିନିଯୋଜନ୍ତେ
ମୋ ମଧ୍ୟ ସ୍ଥିତ, ନିର୍ବାଣଦ ଶାନ୍ତି
ଅବଶ୍ୟ ତ ଜାଣ ସେ ଲଭିଥାନ୍ତି । ॥ ୧୫ ॥

ହେ ଅର୍ଜୁନ, ଯେ ବା ଉଦରମ୍ଭର
ଯେ ଅବା ଅତିଶୟ ନିରାହାର
ଅତି ନିଦ୍ରାଳୁ ବା ଅତି ଜାଗ୍ରତ
ତାର ଯୋଗ ହୁଏନାହିଁ ନିଶ୍ଚିତ । ॥ ୧୬ ॥

ଯାର ଯଥୋଚିତ ବିହାରାହାର,
କର୍ମେ ସମୁଚିତ ଚେଷ୍ଟା ଯାହାର,
ଯାର ଉଚିତ ନିଦ୍ରା ଜାଗରଣ
ତାର ଯୋଗ ହୁଏ ଦୁଃଖହାରଣ । ॥ ୧୭ ॥

ଅଧ୍ୟାୟ-୬ (୧୮-୨୩)

ଯେବେ ବିଶେଷତଃ ନିୟତଚିତ୍ତ
ଆତ୍ମାରେ ହିଁ ହୁଅଇ ଅବସ୍ଥିତ
ରହେ ସର୍ବକାମନା-ସ୍ପୃହାମୁକ୍ତ
ତେବେ ସେ ହିଁ ବୋଲାଏ ଯୋଗଯୁକ୍ତ । ॥ ୧୮ ॥

ବାତ ଗତାଗତ ନଥିବା ସ୍ଥଳେ
ଯଥା ଦୀପଶିଖା ଅକମ୍ପେ ଜଳେ
ଯୋଗାଭ୍ୟାସରତ ସଂଯତଚିତ୍ତ
ଯୋଗୀଙ୍କର ଆତ୍ମା ସେହିପରି ତ । ॥ ୧୯ ॥

ଯୋଗାଭ୍ୟାସବଳେ ସ୍ଥାୟୁତ୍ୱ-ଚିତ୍ତ
ଯେତେବେଳେ ହୁଅନ୍ତି ଉପରତ,
ପୁଣି ଆତ୍ମାକୁ ଆପେ ଦେଇ ଦୃଷ୍ଟି
ଆତ୍ମାରେ ହିଁ ସେ ଲଭନ୍ତି ସନ୍ତୁଷ୍ଟି । ॥ ୨୦ ॥

ଯେବେ ବୁଝନ୍ତି ସେହି ଯୋଗୀବର
ଯା ଇନ୍ଦ୍ରିୟାତୀତ ବୁଦ୍ଧି ଗୋଚର
ତା ଅନନ୍ତ ସୁଖ, ସେ କଦାଚିତ
ତତ୍ତ୍ୱଠାରୁ ନୁହନ୍ତି ବିଚଳିତ । ॥ ୨୧ ॥

ଯା ମିଳନ୍ତେ, ଯେତେ ଲାଭ ଇତର
ଜାଣନ୍ତି ହିଁ ନୁହେଁ ତହୁଁ ଶ୍ରେଷ୍ଠତର ।
ଯହିଁ ଉପନୀତ ହୋଇଲେ ତଥା,
ଅତି ଦୁଃଖେ ହୁଡା ନ ବାଧେ ବ୍ୟଥା । ॥ ୨୨ ॥

ଏମନ୍ତ ଅବସ୍ଥା ବୋଲାଏ ଯୋଗ
ଯହିଁ ଅନ୍ତର ହୁଏ ଦୁଃଖଯୋଗ
ଅକାତର ଚିତ୍ତେ ତେଜି ସଂଶୟ
ସଦା ସାଧିବ ସେ ଯୋଗ ନିଶ୍ଚୟ । ॥ ୨୩ ॥

ଅଧ୍ୟାୟ-୬ (୨୪-୨୯)

ସଂକଳ୍ପ ସମ୍ଭୂତ କାମ ସକଳେ
ହେଲେ ପରିହାର କରି ସମୂଳେ ।
ଆପଣା ମନଶକ୍ତିରୁ କେବଳ
ସଂଯମିବ ସ୍ୱଇନ୍ଦ୍ରିୟ ସକଳ । ॥ ୨୪ ॥

ଧୃତି-ବଶୀଭୂତ ବୁଦ୍ଧି ଖଟାଇ
ମନକୁ ଆତ୍ମାରେ ଦୃଢ଼େ ଲଟାଇ
ନିବୃତ୍ତ ହୋଇ କ୍ରମେ କ୍ରମେ ଶେଷେ
ମନେ ଧରିବ ନାହିଁ ଚିନ୍ତା ଲେଶେ । ॥ ୨୫ ॥

ଚଳଚଞ୍ଚଳ ଅସ୍ଥିର ଏ ମନ
ଯହିଁକି ଯହିଁକି କରେ ଗମନ
ତହୁଁ ସଂଯତ କରି ଫେରାଇବ
ଆତ୍ମାରେ ହିଁ ଆୟତ୍ତ କରାଇବ । ॥ ୨୬ ॥

ପ୍ରଶାନ୍ତଚିତ୍ତ, କଳ୍ମଷବର୍ଜିତ,
ରଜୋଗୁଣରହିତ, ବ୍ରହ୍ମଭୂତ
ଏହି ସ୍ୱଭାବର ଯୋଗୀସତ୍ତମ
ଲଭନ୍ତି ନିଶ୍ଚୟ ସୁଖ ଉତ୍ତମ । ॥ ୨୭ ॥

ବିଗତ କଳ୍ମଷ ହୋଇ ନିରତେ
ଆପଣାକୁ ନିଯୋଜି ଏହିମତେ
ବ୍ରହ୍ମସ୍ପର୍ଶରୂପ ସୁଖ ଉତ୍ତମ
ଭୋଗ କରନ୍ତି ସେ ଯୋଗୀ ସତ୍ତମ । ॥ ୨୮ ॥

ଦୃଷ୍ଟି ଯାର ସମାନ ସବୁ ପ୍ରତି
ଜାଣ ଯୋଗନିଯୁକ୍ତ ସେହି ଯତି
ଦେଖନ୍ତି ନିଜକୁ ସର୍ବଭୂତରେ
ତଥା ସମସ୍ତଙ୍କୁ ନିଜ ଭିତରେ । ॥ ୨୯ ॥

ମୋତେ ସବୁଠାରେ ଯେ ବା ନିରେଖେ
ପୁଣି ସବୁକୁ ମୋ ଭିତରେ ଦେଖେ
ମୁଁ ଅନ୍ତର ନୁହେଁ ଦୃଷ୍ଟିରୁ ତାର
ସେ ମୋ ଦୃଷ୍ଟିରୁ ଦୂର ନୁହେଁ ଆଉ । ॥ ୩୦ ॥
ସର୍ବବ୍ୟାପକ ମୋର ଆରାଧନା
ଯେ କରେ ଧରି ଏକତ୍ୱ ଚେତନା
ସବୁ ଭାବେ ସେହି ଯୋଗୀ ଥିଲେ ହେଁ
ଅବଶ୍ୟ ତ ସମ୍ପାଇ ମୋର ଦେହେ । ॥ ୩୧ ॥
ହେ ଅର୍ଜୁନ, ସୁଖ ଦୁଃଖ ଆନର
ନିଜ ସୁଖ ଦୁଃଖ ପରି ଯେ ନର
ସବୁଠାରେ ଦେଖେ ସମଭାବରେ
ସେ ଅଟନ୍ତି ଶ୍ରେଷ୍ଠ ଯୋଗୀ ଏ ଭବରେ । ॥ ୩୨ ॥

## ଅର୍ଜୁନ କହିଲେ :-

ମଧୁସୂଦନ, ସାମ୍ୟଭାବଯୁକ୍ତ
ଏ ଯେଉଁ ଯୋଗ ତୁମ୍ଭେ କଲ ବ୍ୟକ୍ତ
ଚିତ୍ତଚାଞ୍ଚଲ୍ୟ ସକାଶ ମୁଁ ନିଜ
ତା ସ୍ଥାୟୀ ସ୍ଥିତି ନ ପାରେ ବୁଝିକ । ॥ ୩୩ ॥
ହେ କୃଷ୍ଣ, ଚଞ୍ଚଳ ନିଜ ଏ ମନ
କ୍ଷୁବ୍ଧ ଅଥଚ ଦୃଢ଼, ବଳବାନ
ଦୁଷ୍କର ତ ତାହାର ଦମନ
ମଣେ ମୁଁ ରୋକିବା ପରି ପବନ । ॥ ୩୪ ॥

## ଶ୍ରୀକୃଷ୍ଣ କହିଲେ :-

ହେ ମହାବାହୁ, ନିଃସନ୍ଦେହ କଥା
ମନଟି ଦୁଃସାଧ୍ୟ ଚଞ୍ଚଳ ତଥା ।
ମାତ୍ର ତା ଅଭ୍ୟାସେ ବୈରାଗ୍ୟ ବଳେ
କୌନ୍ତେୟ, ଧରାପଡ଼େ ଅବହେଳେ । ॥ ୩୫ ॥

ମୋର ମତରେ ଅସଯତମନା
ପକ୍ଷରେ ଏ ଯୋଗ ଦୁଷ୍ପ୍ରାପ୍ୟ ସିନା
ସ୍ୱବଶମନା ଯତ୍ନଶୀଳ ହେଲେ
ଉପାୟେ ଏହା ଲଭିପାରେ ହେଲେ । ॥ ୩୬ ॥

**ଅର୍ଜୁନ କହିଲେ :-**

ଶ୍ରଦ୍ଧା ଥିଲେ ହେଁ ହେଲେ ଅସଯତ
ତା ଚିତ୍ତ ହେଲେ ଯୋଗ ସ୍ଖଳିତ
ଯୋଗର ସିଦ୍ଧି ନ ଲଭି ସେ ତବେ
ହେ କୃଷ୍ଣ, କେଉଁ ଗତିକୁ ବା ଲଭେ ? ॥ ୩୭ ॥
ବ୍ରହ୍ମମାର୍ଗବିମୂଢ଼ ହେବା ଲୋକ
ସେ କି ଛିନ୍ନ ଛିନ୍ନ ମେଘ ପ୍ରାୟେକ
ହେ ମହାବାହୁ, ନ ହୁଏ ବିନଷ୍ଟ
ଉଭୟ ପଥରୁ ହେବାରୁ ଭ୍ରଷ୍ଟ । ॥ ୩୮ ॥
ହେ କୃଷ୍ଣ, ମୋହର ସଂଶୟ ଏହୁ
ସମୂଳେ ଛେଦନ କରିବା ହେଉ
ଯେଣୁ ଇତର କେହି ତୁମ୍ଭ ଭିନ୍ନ
କରିନପାରେ ଏ ସଂଶୟ ଛିନ୍ନ । ॥ ୩୯ ॥

**ଶ୍ରୀକୃଷ୍ଣ କହିଲେ :-**

କେହି କଲ୍ୟାଣକାରୀ କଦାଚନ
ନ ଲଭଇ ଦୁର୍ଗତି, ବାପଧନ ।
ସେ ଜନର ନଷ୍ଟେ ବିନାଶ ନାହିଁ
ହେ ପାର୍ଥ, ଇହ ପରଲୋକେ କାହିଁ । ॥ ୪୦ ॥
ହେଲେହେଁ ଯୋଗରୁ ଭ୍ରଷ୍ଟ ସେ ଭବେ
ପୁଣ୍ୟବନ୍ତଙ୍କ ପ୍ରାପ୍ୟଲୋକ ଲଭେ ।
ବର୍ଷ କାଳ ତହିଁ ରହିବା ପରେ
ଜନମଇ ସାଧୁ ଶ୍ରୀମନ୍ତ ଘରେ । ॥ ୪୧ ॥

ଅଧ୍ୟାୟ-୬ (୪୨-୪୭)

ଅବା ସେ ଜନମନ୍ତି ଭୂତଳରେ
ବୁଦ୍ଧିମନ୍ତ ଯୋଗୀଜନ କୁଳରେ,
ବୁଝ ଏମନ୍ତ ଜନମ ନିଶ୍ଚୟ
ଇହଲୋକେ ଦୁର୍ଲଭ ଅତିଶୟ । ।। ୪୨ ।।

ପୂର୍ବଜନ୍ମକ ବୁଦ୍ଧି ଅବଲମ୍ବିଲେ
ପର ଜନ୍ମରେ ତାହାଙ୍କୁ ତ ମିଳେ,
କୁରୁନନ୍ଦନ, ସଂସିଦ୍ଧି ସକାଶ
ସେ ତହୁଁ ଯତ୍ନ କରନ୍ତି ବିଶେଷ । ।। ୪୩ ।।

ଅବଶ ହେଲେହେଁ ଯତ୍ନବିଶେଷ
ଯାଆନ୍ତି ପୂର୍ବ ଅଭ୍ୟାସ ସକାଶ ।
ନତ ଯୋଗ ଜିଜ୍ଞାସୁ ମାତ୍ର ହେଲେ
ଶବ୍ଦବ୍ରହ୍ମକୁ ଟପି ପାରେ ହେଲେ । ।। ୪୪ ।।

ସଯତ୍ନ ଯୋଗୀ ପ୍ରଯତ୍ନର ବଳେ
ଅବଲମ୍ବିଲେ ପାପ ପଙ୍କ ପଖାଳେ ।
ଅନେକ ଜନ୍ମେ ସିଦ୍ଧି ଲଭି ନିଜେ
ପରମଗତି ଅରଜେ ନୈଷ୍ଠିକ । ।। ୪୫ ।।

ଖବଲେ ତପସ୍ୱୀଠାରୁ ଆବର
ଜ୍ଞାନୀଠାରୁ ଯୋଗୀ ଟି ଶ୍ରେଷ୍ଠତର
ଯୋଗୀ ଅଧିକ କର୍ମୀଠାରୁ ପୁଣ
ହେ ଅର୍ଜୁନ, ଯୋଗୀ ହୁଅ ଆପଣ । ।। ୪୬ ।।

ସବୁ ଯୋଗୀ ମଧ୍ୟେ ଯେ ଶ୍ରଦ୍ଧାମତି
ହୋଇ, ମୋ ପ୍ରତି ରଖି ଆସକତି,
ମୋତେ ଅନ୍ତରେ ଭଜେ ନିରନ୍ତରେ
ସେ ସିନା ଯୋଗୀବର ମୋ ମତରେ । ।। ୪୭ ।।

—୦—

# ସପ୍ତମ ଅଧ୍ୟାୟ

(୧-୫)

## ( ବିଜ୍ଞାନ ଯୋଗ )

**ଶ୍ରୀକୃଷ୍ଣ କହିଲେ :-**

ହୋଇ ମୋ ଆଶ୍ରିତ, ଯୋଗଯୁକ୍ତ,
କରି ଚିତ୍ତ ମୋଠାରେ ଆସକ୍ତ,
ନିଃସଂଶୟରେ ପୂରାପୂରି ଯଥା
ମୋତେ ଜାଣିପାର ଶୁଣ ସେ କଥା । ॥ ୧ ॥

ସବିଜ୍ଞାନ ଏ ଜ୍ଞାନେ ସବୁମନ୍ତେ
କହୁଛି ତୁମ୍ଭଙ୍କୁ, ଯାହା ଜାଣନ୍ତେ
ଏ ବିଷୟେ ଅଧିକ କିଛି ନିଜ
ଜାଣିବାକୁ ଆଉ ନଥିବ ବାକି । ॥ ୨ ॥

ସହସ୍ର ସହସ୍ର ମନୁଷ୍ୟ ମଧ୍ୟେ
ସିଦ୍ଧି ଯତ୍ନ କରନ୍ତି ଜଣେ ଅଧେ,
ସଯତ୍ନସିଦ୍ଧିଙ୍କ ମଧ୍ୟରୁ ଦଲେ
ଜାଣନ୍ତି ତତ୍ତ୍ୱତଃ ମୋତେ ବିରଳେ । ॥ ୩ ॥

ଭୂ-ଜଳ-ଅନିଳ-ଅନଳ ଆଉ
ଗଗନ-ମନ-ବୁଦ୍ଧି-ଅହଂକାର
ମୋର ପ୍ରକୃତି ଏହି ମତେ ଚିହ୍ନ
ଆଠ ପ୍ରକାରେ ଅଟେ ଭିନ୍ନ ଭିନ୍ନ । ॥ ୪ ॥

ଏ ଅପରା ପ୍ରକୃତି ଛଡ଼ା ଆନ
ମୋର ପରା ପ୍ରକୃତି ଅଛି ଜାଣ ।
ଜୀବସ୍ୱରୂପା ସେହି ପରା ଏହି
ଜଗତକୁ ଧରିଛି, ମହାବାହୁ । ॥ ୫ ॥

ଭଲେ ବୁଝ ଏ ଯେ ସମସ୍ତ ଭୂତ
ଏ ଦୁଇ ପ୍ରକୃତିରୁ ହିଁ ସମ୍ଭୂତ ।
ମୋଠାରୁ ଜନମେ ସାରା ଜଗତ
ତଥା ଲୟେ ହୁଏ ମୋ ଅନ୍ତର୍ଗତ । ॥ ୬ ॥

ଧନଞ୍ଜୟ, ନାହିଁ କିଛି ହିଁ ଜାଣ
ମୋ ଠାରୁଁ ଶ୍ରେଷ୍ଠତର ହୋଇ ଆନ ।
ସୂତାରେ ଗୁନ୍ଥା ମଣିଗଣ ପ୍ରାୟ
ମୋଠାରେ ଗୁନ୍ଥା ବିଶ୍ୱ-ସମୁଦାୟ । ॥ ୭ ॥

କୌନ୍ତେୟ, ଜାଣ ଜଳରେ ମୁଁ ରସ
ରବିଶଶୀ ମଧ୍ୟେ ପ୍ରଭାପ୍ରକାଶ ।
ବେଦରେ ପ୍ରଣବ, ଆକାଶେ ରବ
ମନୁଷ୍ୟଙ୍କଠାରେ ପୌରୁଷ ହବ । ॥ ୮ ॥

ପୁଣ୍ୟ ଗନ୍ଧ ମୁଁ ପୃଥ୍ୱୀରେ ସିନା
କ୍ଷିବହ୍ନିରେ ମୁଁ ହିଁ ତେଜ କିନା ।
ସର୍ବ ପ୍ରାଣୀ ମଧ୍ୟେ ମୁଁ ହିଁ ପରାଣ
ତପସ୍ୱୀଙ୍କଠାରେ ତପସ୍ୟା ଜାଣ । ॥ ୯ ॥

ହେ ପାର୍ଥ, ମୁଁ ସର୍ବ ପ୍ରାଣୀ ଭିତରେ
ମୂଳ ବୀଜ ବୋଲି ଘେନ ଚିତ୍ତରେ ।
ମୁଁ ବୁଦ୍ଧି ବୁଦ୍ଧିମାନ ମାନଙ୍କର
ତେଜସ୍ୱୀଙ୍କର ମୁଁ ତେଜ ନିକର । ॥ ୧୦ ॥

ବଳବନ୍ତଙ୍କର, ବିରତ ମଣି,
କାମରାଗ ଶୂନ୍ୟ ବଳ ମୁଁ ପୁଣି ।
ମୁଁ ସର୍ବ ପ୍ରାଣୀମାନଙ୍କର ତଥା
ଧର୍ମ ଅବିରୋଧୀ କାମସତ୍ତ୍ୱ । ॥ ୧୧ ॥

ସାତ୍ତ୍ୱିକ ରାଜସ ତାମସ ଭାବ
ଏକା ମୋଠାରୁ ଜନମେଁ ସମ୍ଭବ ।
ସେସବୁ ସିନା ମୋର ଅନ୍ତର୍ଗତେ,
ମୁଁ କାହା ଭିତରେ ନଥାଏ ସତେ । ॥ ୧୨ ॥

ଏ ତିନଗୁଣମୟ ଭାବ ବଳେ
ସାରା ବିଶ୍ୱ ମୋହିତ ହେବା ଫଳେ
ତାଙ୍କ ତହୁଁ ଶ୍ରେଷ୍ଠ ଅବ୍ୟୟ ମୂର୍ତ୍ତି
ବୋଲି କେହି ଜାଣି ପାରନ୍ତି ନାହିଁ । ॥ ୧୩ ॥

ମୋର ଏହି ସକଳ ଗୁଣମୟ
ଦୈବୀମାୟା ଟି ଦୁସ୍ତର ନିଶ୍ଚୟ ।
ଏକା ମୋତେ ଯେ ଆଶ୍ରୟ କରନ୍ତି
ସେମାନେ ହିଁ ଏହି ମାୟା ତରନ୍ତି । ॥ ୧୪ ॥

ଜ୍ଞାନ ହରାଇଛନ୍ତି ମାୟା ବଳେ
ଆସୁରୀ ସ୍ୱଭାବେ ପାପୀ ସକଳେ ।
ସେହି ମୂଢ଼ ଯେ ନରାଧମ ଗଣ
ମୋ ଚରଣେ ନ ପଶନ୍ତି ଶରଣ । ॥ ୧୫ ॥

ଭରତକୁଳମଣି, ଥାଅ ଜାଣି,
ଆରତ, ଜିଜ୍ଞାସୁ, ଅର୍ଥାର୍ଥୀ, ଜ୍ଞାନୀ
ଏ ଚାରି ଜାତି ପୁଣ୍ୟବନ୍ତ ଜନ
ଅର୍ଜୁନ, ମୋତେ କରନ୍ତି ଭଜନ । ॥ ୧୬ ॥

ଯେ ସତତ ଏକାନ୍ତ ଭକ୍ତି ପରେ
ସେ ଜ୍ଞାନୀ ଶ୍ରେଷ୍ଠ ଏ ଚାରି ମଧ୍ୟରେ
ଜ୍ଞାନୀର ପ୍ରିୟ ମୁଁ ହିଁ ଅତିମାତ୍ର
ଆଦର ସେ ହିଁ ମୋର ପ୍ରୀତିପାତ୍ର । ॥ ୧୭ ॥

ହେଲେ ହେଁ ସବୁହେଁ ଅତି ମହତ,
ଜ୍ଞାନୀ ମୋ ଆତ୍ମା ବୋଲି ମୋର ମତ,
ଯେଣୁ ସେ ଯୁକ୍ତାତ୍ମା ମୁଁ ପରଗତ
ମଣି ମୋ ଆଶ୍ରା ହିଁ ନଏ ତା ମତ । ॥ ୧୮ ॥

ବହୁ ଜନ୍ମନ୍ତେ ଜ୍ଞାନବନ୍ତ ପ୍ରାଣୀ
ଏ ସର୍ବ ବାସୁଦେବ ବୋଲି ଜାଣି
ଶେଷକୁ ଆସଇ ପାଶକୁ ମୋର
ଏମନ୍ତ ମହାତ୍ମା ଦୁର୍ଲଭ ନର । ॥ ୧୯ ॥

ହେବାରୁ ସ୍ୱୀୟ ପ୍ରକୃତି ଅଧୀନ
କାମନା ହେତୁ ଜ୍ଞାନହୀନ ଜନ
ଅନ୍ୟ ଦେବଙ୍କ ଶରଣ ନିଅନ୍ତି
ପାଳି ଅନେକ ଆଜେବାଜେ ନୀତି । ॥ ୨୦ ॥

ଅର୍ଚ୍ଚିବାକୁ ହୋଇ ଶ୍ରଦ୍ଧା ଯୁକତ
ଯେ ଅର୍ଚ୍ଚାକୁ ଇଚ୍ଛଇ ସେ ଭକତ ।
ସେହି ଭକତର ଶ୍ରଦ୍ଧା ନିଶ୍ଚଳ
ତହିଁ କରୁଥାଇ ମୁହିଁ କେବଳ । ॥ ୨୧ ॥

ସେହି ଭକତ ଦୃଢ଼ ଶ୍ରଦ୍ଧାଭରେ
ସେହି ଅର୍ଚ୍ଚାକୁ ଆରାଧନା କରେ
ତହୁଁ ଲଭଇ ସେ ବାଞ୍ଛିତ ଫଳ
ବିହିତ ଯା କରିଛି ମୁଁ କେବଳ । ॥ ୨୨ ॥

ଅଳ୍ପବୁଦ୍ଧି ଅର୍ଚ୍ଚାପୂଜକଙ୍କର
ବାଞ୍ଛିତ ଫଳ ସସୀମ ନଶ୍ୱର ।
ଯେ ଦେବେ ଧ୍ୟାଏ ସେ ପାଏ ସେ ଦେବେ
ମୋର ଭକତି ମାନି ମୋତେ ଲଭେ । ॥ ୨୩ ॥

ନ ଜାଣି ମୋର ଅବିନାଶୀ ତଥା
ଅନୁତ୍ତମ ପରଭାବର କଥା
ହେଲେ ହେଁ ମୁଁ ଅବ୍ୟକ୍ତ ବୁଦ୍ଧିହୀନେ
ମୋତେ ବ୍ୟକ୍ତିବୋଲି ଘେନନ୍ତି ମନେ । ॥ ୧୪ ॥

ହେବାରୁ ଯୋଗମାୟାରେ ଘୋଡ଼ାଇ ।
ଏ ମୂଢ଼ଲୋକ ମୋତେ ଜାଣେ ନାହିଁ ।
ମୋର ଜନ୍ମମୃତ୍ୟୁ ନାହିଁ ନକର ।
ପ୍ରତ୍ୟକ୍ଷ ମୁଁ ତୁହେଁ ସକଳଙ୍କର । ॥ ୧୫ ॥

ଯେତେ ଅତୀତ ଯେତେ ବର୍ତ୍ତମାନ
ତଥା ଯେତେ ଭବିଷ୍ୟ ପ୍ରାଣୀମାନ ।
ହେ ଅର୍ଜୁନ, ମୁଁ ସଭଙ୍କୁ ଜାଣିଛୁ
ମାତ୍ର ମୋତେ କେହି ନ ଜାଣେ କିଛୁ । ॥ ୧୬ ॥

ଇଚ୍ଛା-ଦ୍ୱେଷ ଜାତ ଦ୍ୱନ୍ଦ୍ୱଜନିତ
ମୋହ ପ୍ରଭବେ ସମସ୍ତ ପ୍ରାଣୀନ୍ତ
ଜନ୍ମମାତ୍ରେ ହୁଅନ୍ତି ସମ୍ମୋହିତ
ଘେନ ହେ ପରନ୍ତପ, ହେ ଭାରତ । ॥ ୧୭ ॥

ପୁଣ୍ୟ କର୍ମ ଆଚରିବାରୁ ଆର
ପୂର୍ଣ ପାପ ଲୋପ ପାଇଛି ଯାର
ସେ ମୋତେ ହିଁ ଭଜନ୍ତି ଦୃଢ଼ବ୍ରତେ
ଦ୍ୱନ୍ଦ୍ୱଜମୋହ ମୁକ୍ତି ଲଭି ସତେ । ॥ ୧୮ ॥

ଜରାମରଣ ମୁକତି ଲକ୍ଷ୍ୟରେ
ଯେ ମୋତେ ଆଶ୍ରାକରି ଯତ୍ନ କରେ
ସର୍ବ ଅଧ୍ୟାତ୍ମ ସର୍ବ କର୍ମମୟ
ବ୍ରହ୍ମକୁ ସେ ଭଲେ ବୁଝେ ନିଶ୍ଚୟ । ॥ ୧୯ ॥

ଯେ ଯେ ମୋତେ ଜାଣନ୍ତି ଅଧିଭୂତ-
ଅଧିଦୈବ-ଅଧିଯଜ୍ଞ ସହିତ
ପ୍ରୟାଣକାଳେ ବି ସେ ଚେତୁଆଳେ
ମୋତେ ଭଲେ ଜାଣନ୍ତି ଅବହେଳେ । ॥ ୩୦ ॥



# ଅଷ୍ଟମ ଅଧ୍ୟାୟ (୧-୪)

## ( ଅକ୍ଷରବ୍ରହ୍ମଯୋଗ )

**ଅର୍ଜୁନ କହିଲେ :-**

ପୁରୁଷୋତ୍ତମ, ସେ ବ୍ରହ୍ମ କ କଥା ?
ଅଧ୍ୟାତ୍ମ କିସ କର୍ମ କିସ ତଥା ?
କାହାକୁ ବୋଲନ୍ତି ବା ଅଧିଭୂତ ?
ଅଧିଦେବ ବୋଲନ୍ତି କାହାକୁ ତ ? ॥ ୧ ॥
ମଧୁସୂଦନ, ଅଧିଯଜ୍ଞ କିସ ?
ଏ ଦେହେ ତା କେମନ୍ତେ କରେ ବାସ ?
ଚେତୁଆଳେ ତାଙ୍କ ପ୍ରୟାଣ ବେଳେ
କେମନ୍ତେ ତୁମ୍ଭଙ୍କୁ ଜାଣନ୍ତି ହେଳେ ? ॥ ୨ ॥

**ଶ୍ରୀକୃଷ୍ଣ କହିଲେ :-**

ଯେ ବ୍ରହ୍ମ ସେ ଅକ୍ଷର ସେ ପରମ ।
ଅଧ୍ୟାତ୍ମ ଜାଣ ସ୍ୱଭାବର ନାମ ।
ପ୍ରାଣୀଙ୍କ ସୃଷ୍ଟି ବୃଦ୍ଧି ଆଉ ଲୟ
ଯା କରେ ତା ନାମ କର୍ମ ନିଶ୍ଚୟ । ॥ ୩ ॥
କ୍ଷରଭାବର ନାମ ଅଧିଭୂତ
ଆଉ ପୁରୁଷଟି ଅଧିଦୈବତ ।
ଏ ଦେହରେ ହେ ଦେହୀଙ୍କଉତ୍ତମ
କେବଳ ମୋର ଅଧିଯଜ୍ଞ ନାମ । ॥ ୪ ॥

ମୋତେ ହିଁ ଅନ୍ତକାଳେ ଯେଉଁ ଜନ
ସ୍ମରି କଳେବର କରେ ବର୍ଜନ ।
ମୋର ଭାବ ଲଭିବାକୁ ସେ ପାଏ
ଏଥି ସଂଶୟ ନାହିଁ ତିଳେ ମାତ୍ର । ॥ ୫ ॥

ଯେଉଁ ଭାବେ ରତ ନିରତ ନର
ସେ ଭାବ ଭାବି ତେଜେ କଳେବର
ସେ ସେହି ଭାବକୁ ହିଁ ଜାଣ ଲଭେ
ହେ କୌନ୍ତେୟ, ସନ୍ଦେହ ନାହିଁ ଲବେ । ॥ ୬ ॥

ତେଣୁ ସବୁବେଳେ ମୋତେ ସ୍ମରଣ
କରୁଥାଅ, ଆବର କର ରଣ ।
ଚିତ୍ତବୁଦ୍ଧି ମୋଠି କଲେ ଆଶ୍ରୟ
ମୋତେ ହିଁ ଲଭିବ ନାହିଁ ସଂଶୟ । ॥ ୭ ॥

ହେ ପାର୍ଥ, ଯେନ, ସେହି ଜନ ସେବା
ଅଭ୍ୟାସନେମ ଯୋଗଯୁକ୍ତ ହେବା
ଅନନ୍ୟଗାମିକ ଚିତ୍ତେ ସ୍ମରେ ସେ
ଲଭଇ ଦିବ୍ୟ ପରମ ପୁରୁଷେ । ॥ ୮ ॥

ଭ୍ରୂମୂଳ ମଧ୍ୟରେ ଯୋଗବଳେ
ସ୍ଥାପି ପ୍ରାଣବାୟୁକୁ ହିଁ ଭଲେ
ମରଣ କାଳେ ନିଶ୍ଚଳ ମନରେ
ସ୍ମରଇ ଯେ ଜନ ଭକ୍ତିଭରେ ।

ସର୍ବଜ୍ଞ ପୁରାଣ ଅନୁଶାସରେ
ସୂକ୍ଷ୍ମାତିସୂକ୍ଷ୍ମରେ ସର୍ବକର୍ତ୍ତା ରେ
ଅଚିନ୍ତ୍ୟ ତମୋର୍ଦ୍ଧ୍ୱ ଆଦିତ୍ୟପ୍ରଭେ
ସେ ଦିବ୍ୟ ପରମ ପୁରୁଷେ ଲଭେ । ॥ ୯, ୧୦ ॥

ଅଧ୍ୟାୟ-୮ (୧୧-୧୬)

ବେଦଜ୍ଞେ ଯାକୁ ଅକ୍ଷର କହନ୍ତି,
ବୀତରାଗ ଯତି ଯହିଁ ପଶନ୍ତି,
ବ୍ରହ୍ମଚର୍ଯ୍ୟ ପାଳନ୍ତି ଯାକୁ ଇଚ୍ଛି,
ସେ ପଦ ତୁମ୍ଭଙ୍କୁ ଠାରେ କହୁଛି । ॥ ୧୧ ॥

ନରୋଧି ସର୍ବ ଇନ୍ଦ୍ରିୟ ପଥକୁ,
ହୃଦୟରେ ଆକଟି ସ୍ୱ ଚିତ୍ତକୁ,
ପ୍ରାଣକୁ ଭ୍ରୂମଧ୍ୟେ କରି ଥୟ,
ଯୋଗ ଧାରଣାକୁ କରି ଆଶ୍ରୟ,

ଏକାକ୍ଷର ବ୍ରହ୍ମ ଓଁ ଉଚ୍ଚାରି
ଆବର ମୋତେ ହିଁ ସ୍ମରଣ କରି
ଯେ ଅବା ଦେହକୁ ତେଜି ଯାଆନ୍ତି
ସେ ଜାଣ ପରମ ଗତି ପାଆନ୍ତି । ॥ ୧୨, ୧୩ ॥

ମୋତେ ଯେଉଁ ଅନନ୍ୟ ଚେତା ଜନ
ସ୍ମରୁଥାଇ ସତତ ଅନୁଦିନ
ସେହି ନିତ୍ୟ ଯୋଗଯୁକ୍ତ ଯୋଗୀର
ସୁଲଭ ମୁଁ ଅଟେ, ହେ ପାର୍ଥବୀର । ॥ ୧୪ ॥

ମହାତ୍ମାଏ ଲଭିବା ମାତ୍ରେ ମୋତେ
ଦୁଃଖାଳୟ ଅନିତ୍ୟ ଜନ୍ମେ ସତେ
ଲଭ କରନ୍ତି ନାହିଁ ଆଉ ଯାନ୍ତି
ଯେଣୁ ସେ ପରମମୁକ୍ତି ପାଆନ୍ତି । ॥ ୧୫ ॥

ସକଳ ଲୋକ ଆବ୍ରହ୍ମଭୁବନ
ହେ ଅର୍ଜୁନ, ପୁନର୍ଜନ୍ମ ଅଧୀନ ।
କୌନ୍ତେୟ ମାତ୍ର ମୋତେ ଯେବା ଲଭେ
ତା ପୁନର୍ଜନ୍ମ ଆଉ ନ ସମ୍ଭବେ । ॥ ୧୬ ॥

ଅଧ୍ୟାୟ-୮ (୧୭-୨୨)

ଯେହୁ ଜାଣେ ବ୍ରହ୍ମାଙ୍କର ଦିବସ
ସହସ୍ର ଯୁଗରେ ହୁଅଇ ଶେଷ
ରାତ୍ରି ବି ସହସ୍ର ଯୁଗ ପ୍ରମାଣ
ସେହି ଜନ ଅହୋରାତ୍ରଙ୍କ ଜାଣ । ॥ ୧୭ ॥

ବ୍ରହ୍ମାଙ୍କର ଦିବସର ଆଗମେ
ଅବ୍ୟକ୍ତରୁଁ ସବୁ ବ୍ୟକ୍ତ ଜନମେ
ରାତ୍ରିର ଆଗମେ ଅବ୍ୟକ୍ତେ ପୁଣ
ସବୁ ବ୍ୟକ୍ତ ଲୀନ ହୁଅନ୍ତି ଶୁଣ । ॥ ୧୮ ॥

ଜନ୍ମି ଜନ୍ମି ଏ ପ୍ରାଣୀ ସମୁଦୟ
ମରନ୍ତି ରାତ୍ରିର ହେଲେ ଉଦୟ ।
ହେ ପାର୍ଥ, ସେ ପୁଣି ହେଲେ ପ୍ରଭାତ
କର୍ମର ଅବଶେ ହୁଅନ୍ତି ଜାତ । ॥ ୧୯ ॥

ଏ ଅବ୍ୟକ୍ତ ପ୍ରକୃତି ଠୁଁ ଯେ ପର
ସେ ଅନାଦି ଅବ୍ୟକ୍ତ ଭାବାନ୍ତର
ସର୍ବ ଭୂତ ନାଶ ଗଲେ ହେଁ ଭବେ
ଅଧଣେ ନଷ୍ଟ ନ ହୁଅନ୍ତି ଲବେ । ॥ ୨୦ ॥

ଅବ୍ୟକ୍ତ ଅକ୍ଷର ବୋଲି କଥିତ
ତାଙ୍କୁ ବୋଲନ୍ତି ପରମ ଗତି ତ
ଯାଙ୍କୁ ଲଭି କେ ନ ଆସେ ଲେଉଟି
ମୋର ପରମଧାମ ସେହି ଗୋଟି । ॥ ୨୧ ॥

ସମସ୍ତ ଭୂତ ମା ଅନ୍ତରେ ସ୍ଥିତ
ଯେ ଆଉ ସାରା ଜଗତେ ବ୍ୟାପିତ
ହେ ପାର୍ଥ, ସେ ପରମପୁରୁଷ ତ
ଏକାନ୍ତଭକ୍ତିରେ ମିଳନ୍ତି ସତ । ॥ ୨୨ ॥

ଯୋଗୀଏ ଯେତେବେଳେ କଲେ ଗତି
ନିଶ୍ଚୟ ଅଣଲେଉଟା ହୁଅନ୍ତି
ଭରତର୍ଷଭ, ବା ଫେରନ୍ତି ପୁଣ
ସେହି କାଳ କଥା କହୁଛୁ ଶୁଣ । ॥ ୨୩ ॥

ଅଗ୍ନି ଜ୍ୟୋତି ଶୁକ୍ଳ ପକ୍ଷ ଦିବସ
ପୁଣ ଉତ୍ତରାୟଣ ଛଅମାସ
ବ୍ରହ୍ମଜ୍ଞାନୀ ତେତିକବେଳେ ଗଲେ
ବ୍ରହ୍ମକୁ ପ୍ରାପତ ହୁଅନ୍ତି ଭଲେ । ॥ ୨୪ ॥

ଧୂମ ରାତ୍ରି କୃଷ୍ଣପକ୍ଷ ବିଶେଷ
ପୁଣି ଦକ୍ଷିଣାୟନ ଛଅମାସ
ଏଥିରେ ଯୋଗୀ ଚନ୍ଦ୍ରଲୋକଠିଁକି
ଗଲେହେଁ ଲେଉଟି ଆସନ୍ତି ନିକି । ॥ ୨୫ ॥

ଶୁକ୍ଳ କୃଷ୍ଣ ଏ ଦୁଇ ପଥ ସତ
ଜଗତର ତ ଶାଶ୍ୱତ ସମ୍ମତ ।
ଗୋଟିଏ ଟି ଅଣ ଲେଉଟା ପଥ
ଆରଟିରେ ଗଲେ ଫେରିବା ସତ । ॥ ୨୬ ॥

ହେ ପାର୍ଥ, ଜାଣିଲେ ଏ ଦୁଇ ପଥ
କେହି ଯୋଗୀ ନୁହନ୍ତି ମୋହଗତ ।
ତେଣୁ କରି ସର୍ବଦା ଅହରହ
ହେ ଅର୍ଜୁନ, ଯୋଗଯୁକ୍ତ ରହ । ॥ ୨୭ ॥

ସର୍ବ ବେଦେ ଯଜ୍ଞେ ତପେ ଦାନରେ
ଯେଉଁ ପୁଣ୍ୟ ଲଭ୍ୟ ବୋଲନ୍ତି ନରେ
ତା ଜାଣି ଯୋଗୀ, ତଦୂର୍ଦ୍ଧ୍ୱକୁ ଯାଏ
ଆଦ୍ୟପରମ ପଦକୁ ସେ ପାଏ । ॥ ୨୮ ॥



# ନବମ ଅଧ୍ୟାୟ

(୧-୫)

## ( ରାଜଗୁହ୍ୟ ଯୋଗ )

**ଶ୍ରୀକୃଷ୍ଣ କହିଲେ :-**

ତୁମ୍ଭେ ଅସୂୟାଶୂନ୍ୟ ଚବୋଲି ଜାଣି
ଅତୀବ ଗୁହ୍ୟ ଏହି ଜ୍ଞାନବାଣୀ
କହୁଛୁ ଫେଡ଼ି ବିଜ୍ଞାନ ସହିତ
ଯା ଜାଣି ଅଶୁଭୁ ହେବ ମୁକତ । ॥ ୧ ॥

ରାଜବିଦ୍ୟା ରାଜଗୁହ୍ୟ ଏ ଜାଣ
ପବିତ୍ର ଉତ୍ତମ ଅବ୍ୟୟ ପୁଣ
ପ୍ରତ୍ୟକ୍ଷ୍ୟ ଲକ୍ଷ୍ୟ ପରମସଙ୍ଗତ
ଯା ଆଚରିବାର ସୁସାଧ୍ୟ ସତ । ॥ ୨ ॥

ହେ ପରନ୍ତପ, ଏହି ଧରମରେ
ଶ୍ରଦ୍ଧାହୀନ ଜନେ ନ ଲଭି ମୋରେ
ଚରଣ କରୁଥାଆନ୍ତି ସତତରେ
ମରଣମୟ ସଂସାର ପଥରେ । ॥ ୩ ॥

ଅବ୍ୟକ୍ତମୂର୍ତ୍ତି ମୁଁ ସ୍ୱୟଂ ସତତରେ
ବ୍ୟାପିଛି ଏ ସମସ୍ତ ଜଗତରେ ।
ମୋ ମଧ୍ୟରେ ସର୍ବଭୂତ ଅଛନ୍ତି
ମୁଁ କିନ୍ତୁ ନୁହେଁ ତାହା ମଧ୍ୟେ ସ୍ଥିତ । ॥ ୪ ॥

ବାସ୍ତବେ ମୋଠି ନାହିଁ କେହି ଭୂତ
ଦେଖ ମୋ ଈଶ୍ୱରଯୋଗ ଅଦ୍ଭୁତ ।
ମୁଁ ଭୂତର ସ୍ରଷ୍ଟା ପୋଷକ ହୁଏ
ମାତ୍ର ମୋ ଆତ୍ମା ଭୂତଗତ ନୁହେଁ । ॥ ୫ ॥

ସର୍ବତ୍ରଗ ମହାବାୟୁ ଯେମନ୍ତ
ଆକାଶରେ ସ୍ଥିତ ରହେ ସତତ
ସମସ୍ତ ଭୂତ ମୋଠାରେ ଅବଶ୍ୟ
ସ୍ଥିତ ତଥା, ବୁଝ ଏହି ରହସ୍ୟ । ॥ ୬ ॥

କୌନ୍ତେୟ, କଳ୍ପ ଶେଷେ ଭୂତଚୟ
ମୋ ପ୍ରକୃତି ମଧ୍ୟେ ଭଜନ୍ତି ଲୟ ।
କଳ୍ପ ଆରମ୍ଭରେ ମୁଁ ଆଉ ଥରେ
ଏ ଭୂତ ସମସ୍ତଙ୍କ ସୃଷ୍ଟି କରେ । ॥ ୭ ॥

ପ୍ରକୃତି ଯୋଗେ ପରାଧୀନ ଏହି
ସମୁଦାୟ ଭୂତଗ୍ରାମକୁ ମୁହିଁ ।
ଥର ଥର କରି ଥାଏ ସରଜି
ନିଜ ମାୟା ପ୍ରକୃତିଙ୍କ ନିଯୋଜି । ॥ ୮ ॥

ଏ ସବୁ କର୍ମେ ଅନାସକ୍ତ ତଥା
ଉଦାସୀନ ମୁଁ ଥିବାରୁ ସର୍ବଥା
ମୋତେ ସେ ସକଳ କର୍ମନିଚୟ
ବନ୍ଧନ କରେ ନାହିଁ, ଧନଞ୍ଜୟ । ॥ ୯ ॥

ପ୍ରେରିତ ହୋଇ ପ୍ରକୃତି ମୋ ଦ୍ୱାରା
ଜାତ କରେ ତ ଚରାଚର ସାରା ।
ହେ କୌନ୍ତେୟ ଏହି ସକାଶୁଁ ସତ
ଗଢ଼ି ଗଢ଼ି ଚାଲିଛି ଏ ଜଗତ । ॥ ୧୦ ॥

ମୁଁ ସର୍ବଭୂତ-ମହେଶ୍ୱର-ସ୍ୱାମୀ
ମୂଢେ ଏ ପରମଭାବ ନ ଜାଣି ।
ମୋତେ ଅବଜ୍ଞା କରୁଛନ୍ତି ମାନ
ଧରିଛୁ ବୋଲି ମୁଁ ମାନୁଷଗାତ । ॥ ୧୧ ॥

ସେମାନେ ମୋହକାରିଣୀ ଆସୁରୀ
ରାକ୍ଷସୀ ପ୍ରକୃତିକୁ ଆଶ୍ରା କରି
ନିଷ୍ଫଳକର୍ମୀ ବ୍ୟର୍ଥମନୋରଥ
ବ୍ୟର୍ଥଜ୍ଞାନବନ୍ତ ବିକ୍ଷିପ୍ତ ଚିତ୍ତ । ॥ ୧୨ ॥

କିନ୍ତୁ, ପାର୍ଥ, ମହାତ୍ମା ସମୁଦାୟ
ଦୈବୀ ପ୍ରକୃତିକୁ କରି ଆଶ୍ରୟ
ଭୂତପ୍ରାଣ ଅବ୍ୟୟ ଜାଣି ମୋତେ
ଅନନ୍ୟମାନସେ ଭଜନ୍ତି ସତତେ । ॥ ୧୩ ॥

କରି ସତତ କୀର୍ତ୍ତନ ଯତନ
ନୋଇ ଦୃଢବ୍ରତ ତଥା ଯତନ
ସେମାନେ ହୋଇ ନିତ୍ୟଯୁକ୍ତମନା
ସାଧନ୍ତି ନିଜ ମୋର ଉପାସନା । ॥ ୧୪ ॥

ବହୁଧା ସର୍ବବ୍ୟାପକ ମୁଁ ହୁଇ
ଜ୍ଞାନଯଜ୍ଞ ଧ୍ୟାନେ ମୋତେ ପୂଜି
ଦ୍ୱୈତ ଜ୍ଞାନେ ତଥା ଅଦ୍ୱୈତଜ୍ଞାନେ
ମୋର ଉପାସନା କରନ୍ତି ଆନେ । ॥ ୧୫ ॥

ମୁଁ ଯଜ୍ଞ, ବୈଦିକସ୍ମାର୍ତ୍ତ କ୍ରିୟା,
ମୁଁ ଶ୍ରାଦ୍ଧପିଣ୍ଡ, ମୁଁ ପୁଣି ଔଷଧ,
ମୁଁ ସ୍ୱୟଂ ମନ୍ତ୍ର, ମୁଁ ହିଁ ଆଦ୍ୟ ଜାଣ,
ମୁଁ ଅଗ୍ନି ତଥା ଆହୁତି ପ୍ରମାଣ । ॥ ୧୬ ॥

ମୁଁ ଏ ଜଗତର ପିତା ଓ ମାତା,
ମୁଁ ଜ୍ଞେୟ, ପୁଣି ପିତାମହ ଧାତା
ମୁଁ ଜଗେ ପବିତ୍ର ସ୍ୱୟଂ ଓଁକାର,
ମୁଁ ହିଁ ଋକ୍ ସାମ ଯଜୁର୍ବେଦ ଆର । ॥ ୧୭ ॥

ମୁଁ ପୁଣି ଗତି, ଶରଣ, ପୋଷକ,
ସାକ୍ଷୀ, ନିବାସ, ସହାୟ, ଶାସକ,
ମୁଁ ସୃଷ୍ଟିପ୍ରଭବ, ଲୟ, ଆଧାର
ଅବିନାଶୀ ବୀଜ, ନିଧାନ ଆର । ॥ ୧୮ ॥

ମୁଁ ତତାଏ, ମୁଁ ଜନମାଏ ଘନ,
ଆବର ବରଷାଏ ମୁଁ, ଅର୍ଜୁନ,
ମୁଁ ହିଁ ଅମରତ୍ୱ, ମରଣ ତଥା
ମୁଁ ବି ସତ ଅସତ ବେନି କଥା । ॥ ୧୯ ॥

ବେଦଜ୍ଞ ସୋମପା ନିଷ୍ପାପମତି
ମୋତେ ଯଜ୍ଞେ ପୂଜି ସ୍ୱର୍ଗ ମାଗନ୍ତି
ପୁଣ୍ୟ ସୁରେନ୍ଦ୍ରଲୋକେ ଲଭି ସ୍ଥାନ
ତହିଁ ଭୋଗନ୍ତି ଦିବ୍ୟସୁଖମାନ । ॥ ୨୦ ॥

ବେଦଧର୍ମାଶ୍ରୟେ ଫଳାଶୀ ଗଣ
ସେ ବିଶାଳସ୍ୱର୍ଗ ଭୋଗି ସେ ପୁଣ
ପୁଣ୍ୟ ସରନ୍ତେ ଫେରନ୍ତି ମର୍ତ୍ତ୍ୟ
ବାରଂବାର ହୁଅନ୍ତି ଗତାଗତ । ॥ ୨୧ ॥

ଯେଉଁ ଜନେ ଅନନ୍ୟଭାବେ ସତେ
ମୋତେ ଧ୍ୟାୟି ଉପାସନ୍ତି ନିତ୍ୟତେ ।
ମୋଠି ନିତ୍ୟନିଷ୍ଠ ସେ ଜନାଙ୍କର
ଯୋଗକ୍ଷେମ ମୁଁ ଘଟାଏ ନିକର । ॥ ୨୨ ॥

ଅନ୍ୟ ଦେବତାଭକ୍ତ ହୋଇ ସୁଦ୍ଧା
ଯେଉଁ ଜନେ ପୂଜନ୍ତି ରଖି ଶ୍ରଦ୍ଧା
କୌନ୍ତେୟ, ସେ ମଧ୍ୟ ମୋ ଉପାସନା
କରନ୍ତି, ଅବିଧିପୂର୍ବକ ସିନା । ॥ ୨୩ ॥

ମୁଁ ହିଁ ସବୁ ଯଜ୍ଞମାନଙ୍କର
ଏକେ ଭୋକ୍ତା ଦୁକେ ପ୍ରଭୁ ନକର
ଯେଣୁ ତତ୍ତ୍ୱରେ ମୋତେ ନ ଜାଣନ୍ତି
ସେ ହେତୁ ସେମାନେ ଖସି ପଡ଼ନ୍ତି । ॥ ୨୪ ॥

ଦେବେ ଲଭନ୍ତି ଦେବବ୍ରତ ଯେତେ
ପିତୃଙ୍କୁ ବି ଲଭନ୍ତି ପିତୃବ୍ରତେ,
ଭୂତଙ୍କୁ ଲଭନ୍ତି ଭୂତ ଅର୍ଚ୍ଚକେ
ତଥା ମୋତେ ପାଆନ୍ତି ମୋ ପୂଜକେ । ॥ ୨୫ ॥

ମୋତେ ଯେ ଅରପେ ଭକ୍ତି ସହିତେ
ପତ୍ର, ଫୁଲ, ଫଳ, ଜଳ ଭକ୍ତିରେ
ସଂଯତାତ୍ମା ସେ ଜନର ଅର୍ପିତ
ଭକ୍ତି ଉପହାର ମୋତେ ମୁଦିତ । ॥ ୨୬ ॥

କର ଯେ କର୍ମ, ଖାଅ ଯା ଭୋଜନ
ଯେଉଁ ହୋମ କର, ଦିଅ ଯା ଦାନ ।
କୌନ୍ତେୟ ଯେ ବା ତପସ୍ୟା ଆଚର
ମୋତେ ସରବ ଅରପଣ କର । ॥ ୨୭ ॥

ଏସନେ ଶୁଭ ଶୁଭ ଫଳ ଯୁକ୍ତ
କର୍ମ ବନ୍ଧନରୁ ହୋଇବ ମୁକ୍ତ
ଏ ସନ୍ୟାସ ଯୋଗ ଯୁକ୍ତ ଲୋକତ
ମୋତେ ହିଁ ଲଭିବ ହୋଇ ମୁକତ । ॥ ୨୮ ॥

ମୁଁ ସମଚିତ୍ତ ସର୍ବଭୂତ ଠାଇଁ
ମୋର କେ ଅପ୍ରିୟ କି ପ୍ରିୟ ନାହିଁ
ମାତ୍ର ମୋତେ ଯେ ଭଜେ ଭକତିରେ
ସେ ମୋଠି ରହେ, ମୁଁ ବି ତା ହୃଦରେ । ॥ ୨୯ ॥

ହେଲେହେଁ ଦୁରାଚାର ଅତୀବ ସେ
ଅନନ୍ୟଭାବରେ ମୋତେ ହିଁ ଭଜେ,
ତାକୁ ହିଁ ସାଧୁ ବୋଲିବା ବିହିତ
ସେ ଯେଣୁ ଉତ୍ତମ ବ୍ୟବସାୟୀ ତ । ॥ ୩୦ ॥

ଶୀଘ୍ର ହୁଏ ଅବିଳମ୍ବେ ଧର୍ମପ୍ରାଣ
ପୁଣ ଶାଶ୍ୱତଶାନ୍ତି ପାଏ ଜାଣ ।
କୌନ୍ତେୟ, କର ଉଦ୍‌ଘୋଷଣ ଜେତେ
ମୋର ଭକତ ବିନାଶ ନ ଲଭେ । ॥ ୩୧ ॥

ଯେତେ ଜନ ହୀନ ଯୋନି ସମ୍ଭବ,
ନାରୀ, ବୈଶ୍ୟ ତଥା ଶୂଦ୍ର ସରବ
ହେ ପାର୍ଥ, ସେ ମୋତେ କରି ଆଶ୍ରୟ
ଲଭନ୍ତି ପରମଗତି ନିଶ୍ଚୟ । ॥ ୩୨ ॥

ପୁଣ୍ୟ ବିପ୍ର, ଭକ୍ତ ରାଜର୍ଷି ତଥା
କିସ କହିବି ତାଙ୍କ ଗତି କଥା ।
ଅନିତ୍ୟ ସୁଖଶୂନ୍ୟ ଏ ଭୁବନ
ଯେଣୁ ଲଭିଛୁ କର ମୋ ଭଜନ । ॥ ୩୩ ॥

ଏକା ମୋଠାରେ ଲଗାଅ ମନ ତ
ମୋତେ ଭଜ, ପୂଜ, ହୁଅ ପ୍ରଣତ ।
ନିଜକୁ ନିଜ ନିୟୋଜି ଏମନ୍ତେ
ମୋ ଆଶ୍ରିତ ହେଲେ ଲଭିବ ମୋତେ । ॥ ୩୪ ॥



# ଦଶମ ଅଧ୍ୟାୟ (୧-୫)

## (ବିଭୂତି ଯୋଗ)

**ଶ୍ରୀକୃଷ୍ଣ କହିଲେ :-**

ମୋର ଏ ସାର କଥା ଆଉଆଉ
ବଖାଣୁଛି ଶୁଣ, ହେ ମହାବାହୁ,
ତୁମେ ମୋ ପ୍ରିୟ ବୋଲି ଯା କହୁଛି
ତୁମକୁ ତ ତୁମର ହିତ ଇଚ୍ଛି । ॥ ୧ ॥

ସୁରେ ନ ଜାଣନ୍ତି ମୋ ଜନ୍ମ କଥା
ମହର୍ଷିଗଣେ ନ ଜାଣନ୍ତି ତଥା
ମୁଁ ଯେଣୁ ସର୍ବପ୍ରକାରେ କାରଣ
ସୁରଙ୍କର ମହର୍ଷିଙ୍କର ପୁଣ । ॥ ୨ ॥

ଅଜ, ଅନାଦି, ସର୍ବଲୋକେଶ୍ୱର
ବୋଲି ମୋତେ ଜାଣଇ ଯେଉଁ ନର
ନର ମଧ୍ୟେ ଅମୂଢ଼ ସେ ଲୋକ ତ
ସକଳ ପାପୁଁ ସେ ହୁଏ ମୁକତ । ॥ ୩ ॥

ବୁଦ୍ଧି, ଜ୍ଞାନ, ମୋହବିହୀନମନ,
କ୍ଷମା, ସତ୍ୟ, ବାହ୍ୟେନ୍ଦ୍ରିୟ ଦମନ,
ସଂଯମ, ସୁଖ, ଦୁଃଖ, ସୃଷ୍ଟି, ଲୟ,
ଅଭୟ ଭାବ, ଆଉ ମଧ୍ୟ ଭୟ । ॥ ୪ ॥

ଅହିଂସା, ସମବୁଦ୍ଧିର, ସନ୍ତୋଷ
ତପ, ଦାନ, ସୁଯଶ, ଅପଯଶ,
ସର୍ବ ପ୍ରାଣୀଙ୍କର ସମସ୍ତ ଭାବ
ନାନାବିଧ ମୋଠୁଁ ହୁଏ ଉଦ୍ଭବ । ॥ ୫ ॥

ମହର୍ଷି ସାତ ପୁଣ ପୂର୍ବଜାଣ
ମୋର ପ୍ରଭାବବନ୍ତ ମନୁଗଣ ।
ମୋ ମାନସୁ ସର୍ବେ ଜାତ ନିକର
ସର୍ବ ଲୋକ ବଂଶଜ ତାହାଙ୍କର । ॥ ୬ ॥

ଯେ ଏହି ବିଭୂତିଯୋଗକୁ ମମ
ଯଥାର୍ଥଭାବେ କରେ ହୃଦଙ୍ଗମ,
ସେ ହୁଏ ଯୋଗଯୁକ୍ତ ନିଶ୍ଚିତ
ଏଥିରେ ନାହିଁ ସଂଶୟ କିଂଚିତ । ॥ ୭ ॥

ଜାଣ ମୁଁ ସବୁ କଥାର ପ୍ରଭବ ।
ମୋଠାରୁ ପ୍ରବର୍ତ୍ତିଛି ଟି ସର୍ବ ।
ଏହା ଜାଣି ନବ ପଣ୍ଡିତ ଜନ
ଭାବଭରେ କରେ ମୋର ଭଜନ । ॥ ୮ ॥

ମୋଠି ନିବିଷ୍ଟଚିତ୍ତ ନ୍ୟସ୍ତପ୍ରାଣ
ଜନେ ପରସ୍ପରେ ବୁଝାନ୍ତି ଜାଣି ।
ନିତ୍ୟ ଚର୍ଚ୍ଚା କରନ୍ତି ମୋର କଥା
ଲଭନ୍ତି ସନ୍ତୋଷ ହରଷ ତଥା । ॥ ୯ ॥

ସେ ନିରତ ବିଭୁଭାବଯୁକ୍ତଙ୍କ
ମତ୍ତିର ଭଜନକାରୀ ଭକ୍ତଙ୍କେ
ଏ ବୁଦ୍ଧି ଯୋଗକୁ ଦିଏ ମୁଁ ସତେ
ଯା ଯୋଗେ ସେମାନେ ଲଭନ୍ତି ମୋତେ । ॥ ୧୦ ॥

ତାଙ୍କୁ ହିଁ କରୁଣା କରିବା ପାଇଁ
ମୁଁ ତାଙ୍କ ଆତ୍ମଭାବେ ରହି ଥାଇ
ଜାଳି ଦେଦୀପ୍ୟମାନ ଜ୍ଞାନ ଦୀପ
ଅଜ୍ଞାନଜ ତମକୁ କରେ ଲୋପ । ॥ ୧୧ ॥

## ଅର୍ଜୁନ କହିଲେ :-

ପରବ୍ରହ୍ମ ପରଧାମ ଆପଣ,
ଆପଣ ପରମ ପବିତ୍ର ପୁଣ ।
ଶାଶ୍ୱତ ଦିବ୍ୟ ପୁରୁଷ ନିକର
ଆଦିଦେବ ଅଜ ବିଭୁ ଆବର । ॥ ୧୨ ॥

ତୁମ୍ଭଙ୍କୁ ନାରଦ ଦେବର୍ଷି ପ୍ରମୁଖ
ଅସିତ , ଦେବଳ, ବ୍ୟାସ ପ୍ରମୁଖ
ମହର୍ଷି ବର୍ଣ୍ଣିଛନ୍ତି ଏମନ୍ତେ
ସ୍ୱୟଂ ମଧ୍ୟ କହୁଛ ତଥା ମୋତେ । ॥ ୧୩ ॥

କେଶବ, ତୁମ୍ଭେ ଯାହା କହିଲ ତ
ସେ ସକଳ କଥା ମୁଁ ମଣେ ସତ ।
ଭଗବାନ୍, ତବ ବ୍ୟକ୍ତିତ୍ୱ ଲବେ
ନ ଜାଣନ୍ତି ଦେବେ ଏବଂ ଦାନବେ । ॥ ୧୪ ॥

ହେ ପୁରୁଷୋତ୍ତମ ଜଗତ୍ପତି
ହେ ଭୂତ ଭବନ ହେ ଦେବଦେବ,
ହେ ସର୍ବଭୂତ ଈଶ୍ୱର ଆପଣ
ନିଜେ ହିଁ କେବଳ ନିଜକୁ ଜାଣ । ॥ ୧୫ ॥

ଯେ ଯେ ଦିବ୍ୟବିଭୂତିମାନ ଧରି
ସବୁ ଲୋକରେ ଅଛ ବ୍ୟାପି କରି
ତୁମ୍ଭର ସେ ବିଭୂତିର ବର୍ଣ୍ଣନ
ତୁମ୍ଭେ ହିଁ କହି ପାରିବ ସମ୍ପୂର୍ଣ୍ଣ । ॥ ୧୬ ॥

ହେ ଯୋଗି, କେମନେ ସତତ ଧ୍ୟାୟି
ତୁମ୍ଭଙ୍କୁ ଜାଣିବି କହ ବୁଝାଇ ।
କି ଯେଉଁ ରୂପରେ, ହେ ଭବ ଜ୍ଞାନ
କହ ତୁମ୍ଭଙ୍କୁ ମୁଁ କରିବି ଧ୍ୟାନ ॥ ୧୭ ॥

ତବ ଯୋଗକୁ ବିଭୂତିକୁ ଆଉ
ପୁନର୍ବାର ବଖାଣ ସବିସ୍ତାର
ଜନାର୍ଦ୍ଦନ, ଯେଣୁ ଅମୃତୋପମ
କଥା ଶୁଣି ତୃପ୍ତି ଜନ୍ମୁନି ମମ । ॥ ୧୮ ॥

## ଶ୍ରୀକୃଷ୍ଣ କହିଲେ :-

ମୋର ଦିବ୍ୟ ଆତ୍ମବିଭୂତି ଚୟ
ଯାର ବିସ୍ତାର ଅନନ୍ତ ନିଶ୍ଚୟ
ତହୁଁ ପ୍ରଧାନ କିଛି କିଛି ବାଛି
ହେ କୁରୁଶ୍ରେଷ୍ଠ, ତୁମ୍ଭଙ୍କୁ କହୁଛି । ॥ ୧୯ ॥

ହେ ଗୁଡ଼ାକେଶ, ଏ ସମସ୍ତ ଭୂତ
ମଧ୍ୟେ ସ୍ଥିତ ଆତ୍ମା ଟି ତୁହି ମୁଁ ତ ।
ମୁଁ ଆବର ଜାଣ ସର୍ବଭୂତ ର
କାରଣ ଆଦି, ମଧ୍ୟ ଓ ଅନ୍ତର ॥ ୨୦ ॥

ଆଦିତ୍ୟଗଣରେ ମୁଁ ବିଷ୍ଣୁ ଜାଣ
ଜ୍ୟୋତିଷ୍କ ମଧ୍ୟେ ରବିଅଂଶୁମାନ ।
ମରୁତ୍ ମାନ ମଧ୍ୟେ ମୁଁ ମରୀଚି
ତାରା ମଧ୍ୟେ ଚନ୍ଦ୍ର ନାମ ଧରିଛି । ॥ ୨୧ ॥

ତ୍ରିବିଧ ବେଦ ମଧ୍ୟରେ ମୁଁ ସାମ
ଦେବଙ୍କ ମଧ୍ୟେ ବାସବ ମୋ ନାମ ।
ଇନ୍ଦ୍ରିୟଗଣରେ ମୁଁ ମନ ସିନା,
ସର୍ବ ଭୂତ ମଧ୍ୟେ ମୁଁ ହିଁ ଚେତନା । ॥ ୨୨ ॥

ରୁଦ୍ରମାନଙ୍କର ମଧ୍ୟେ ଶଙ୍କର
ଯକ୍ଷରକ୍ଷସଙ୍କ ମଧ୍ୟେ କୁବେର ।
ବସୁଗଣ ଗହଣେ ମୁଁ ଅନଳ
ଶିଖରୀ ମେଳରେ ମେରୁ ଅଚଳ । ॥ ୨୩ ॥

ପୁରୋହିତଙ୍କ ମଧ୍ୟେ ଯେ ପ୍ରବର
ସେ ବୃହସ୍ପତି, ପାର୍ଥ, ମୁଁ ଆବର
ସେନାନୀଙ୍କ ଭିତରେ ମୁଁ କୁମାର
ଜଳାଧାରଙ୍କ ମଧ୍ୟେ ସାଗରବାର । ॥ ୨୪ ॥

ମହର୍ଷିଙ୍କ ମଧ୍ୟେ ମୁଁ ଭୃଗୁ ଆର
ଗିର ମଧ୍ୟେ ଏକାକ୍ଷର ଓଁକାର ।
ଯଜ୍ଞ ମଧ୍ୟେ ଜପଯଜ୍ଞ କହୁଛୁ
ସ୍ଥାବରଙ୍କ ମଧ୍ୟରେ ହିମାଳୟୁ । ॥ ୨୫ ॥

ମୁଁ ଅଶ୍ୱତ୍ଥ ସର୍ବବୃକ୍ଷ ମଧ୍ୟରେ
ଦେବର୍ଷିରେ ନାରଦ ନାମ ଧରେ ।
ଗନ୍ଧର୍ବଙ୍କ ମଧ୍ୟରେ ଚିତ୍ରରଥ
ସିଦ୍ଧଙ୍କ ମଧ୍ୟରେ କପିଳ ସତ । ॥ ୨୬ ॥

ଅଶ୍ୱମାନଙ୍କର ମଧ୍ୟରେ ମୁଁ ତ
ଉଚ୍ଚୈଃଶ୍ରବା ମେ ସୁଧାରୁ ସମ୍ଭୂତ ।
ଗଜେନ୍ଦ୍ରଙ୍କ ମଧ୍ୟରେ ଐରାବତ
ନରଙ୍କ ମଧ୍ୟେ ନରାଧିପ ସତ । ॥ ୨୭ ॥

ଆୟୁଧେ ବଜ୍ର ବୋଲି ହୁଏ କୁହା
ଧେନୁଙ୍କ ମଧ୍ୟରେ ମୁଁ କାମଦୁହା ।
ପ୍ରଜନନକାରଣ ମୁଁ କନ୍ଦର୍ପ
ସର୍ପଙ୍କ ମଧ୍ୟେ ବାସୁକୀସର୍ପ । ॥ ୨୮ ॥

ନାଗମାନଙ୍କ ମଧ୍ୟେ ମୁଁ ଅନନ୍ତ
ଜଳଚରରେ ବରୁଣ ତେମନ୍ତ ।
ପିତୃଗଣେ ଅର୍ଯ୍ୟମା ନାମ ଧରେ
ମୁଁ ଯମ ସଂଯମକାରୀ ମଧ୍ୟରେ । ॥ ୨୯ ॥

ଅଧ୍ୟାୟ-୧୦ (୩୦-୩୫)

ଦୈତ୍ୟେ ମୁଁ ପ୍ରହ୍ଲାଦ ହିରଣ୍ୟଦାନ
କଳନାକାରୀଙ୍କ ମଧ୍ୟେ ମୁଁ କାଳ
ପଶୁଙ୍କ ମଧ୍ୟରେ ମୁଁ ପଞ୍ଚାନନ
ପକ୍ଷୀଙ୍କ ମଧ୍ୟେ ବିନତାନନ୍ଦନ । ॥ ୩୦ ॥

ବେଗବାନରେ ପବନ ମୋ ନାମ
ଶସ୍ତ୍ରଧାରୀଙ୍କ ମଧ୍ୟେ ମୁଁ ଶ୍ରୀରାମ
ମତ୍ସ୍ୟ କୁଳରେ ମୁଁ ଜାଣ ମକର
ନଦୀଙ୍କ ମଧ୍ୟେ ମୁଁ ଗଙ୍ଗା ନିକର । ॥ ୩୧ ॥

ଅର୍ଜୁନ, ସାରା ସୃଷ୍ଟିର ସର୍ବଥା
ମୁଁ ଆଦି ମଧ୍ୟ ଅନ୍ତ ଭିନ କଥା
ବିଦ୍ୟାମଧ୍ୟେ ଅଧ୍ୟାତ୍ମ ବିଦ୍ୟା ଜାଣ
ମୁଁ ହିଁ ବକ୍ତାଙ୍କର ବାଦ ପ୍ରମାଣ । ॥ ୩୨ ॥

ଅକ୍ଷରଙ୍କ ମଧ୍ୟରେ ମୁଁ ଅକାର ।
ସମାସରେ ଦ୍ୱନ୍ଦ୍ୱ ସେହି ପ୍ରକାର ।
ମୁଁ ସେହି କାଳ ନାହିଁ ଯାର କ୍ଷୟ
ମୁଁ ଧାତା ବିଶ୍ୱତୋମୁଖଂ ନିଶ୍ଚୟ । ॥ ୩୩ ॥

ମୁଁ ହିଁ ସର୍ବବିନାଶକ ମରଣ
ତଥା ଭବିଷ୍ୟର ଜନ୍ମକାରଣ
ମୁଁ ପୁଣି ନାରୀଙ୍କ କୀର୍ତ୍ତି, ଶ୍ରୀ, ସ୍ମୃତି
ବାଣୀ, ମେଧା, କ୍ଷମା ଆବର ଧୃତି । ॥ ୩୪ ॥

ସାମବେଦେ ମୁଁ ମନ୍ତ୍ର ବୃହତ୍‌ସାମ
ଛନ୍ଦାଦିରେ ଗାୟତ୍ରୀ ମୋ ନାମ ।
ମାସରେ ମୁଁ ମାର୍ଗଶିର ନିକର
ଋତୁଯାକରେ ମୁଁ କୁସୁମାକର । ॥ ୩୫ ॥

ଛଳକର୍ମୀ ମାନରେ ଦ୍ୟୁତ ହୋଇ
ମୁଁ ହିଁ ତେଜସ୍ୱୀ ଲୋକଙ୍କର ତେଜ ।
ମୁଁ ସ୍ୱୟଂ ଜୟ, ସ୍ୱୟଂ ବ୍ୟବସାୟ
ସାତ୍ତ୍ୱିକଙ୍କର ମୁଁ ସତ୍ତ୍ୱ ନିଶ୍ଚୟ । ॥ ୩୬ ॥

ବୃଷ୍ଣି ବଂଶେ ବାସୁଦେବ ଆମ୍ଭେ
ତଥା ଧନଞ୍ଜୟ ପାଣ୍ଡବଗଣେ ।
ମୁନିଙ୍କ ମଧ୍ୟେ ବ୍ୟାସ ପାରାଶର
କବି ଗହଣେ ଉଶନା ଆବର । ॥ ୩୭ ॥

ମୁଁ ଦଣ୍ଡ ଟି, ଦମନକାରୀଙ୍କର
ଜିଗୀଷୁ ଜନଙ୍କ ନୀତି ନିକର ।
ଗୋପନୀୟ ମଧ୍ୟରେ ମୌନ ପୁଣ
ଜ୍ଞାନୀଜନଙ୍କର ମୁଁ ଜ୍ଞାନ ଶୁଣ । ॥ ୩୮ ॥

ସର୍ବଭୂତର ଯା ବୀଜ ସମ୍ଭବ
ହେ ଅର୍ଜୁନ, ମୁଁ ତାହା ବୋଲି ଭାବ ।
ଚରାଚରେ ଏମନ୍ତ କିଛୁ ନାହିଁ
ଯା ମୋ ବିନା ସମ୍ଭବ ପାରେ କାହିଁ । ॥ ୩୯ ॥

ମୋର ଦିବ୍ୟ ବିଭୂତିମାନଙ୍କର
ପରନ୍ତପ, ନାହିଁ ଅନ୍ତ ନିକର ।
ଯେ ବିସ୍ତର ବିଭୂତିର ଅଳପ
ସୂଚନାମାତ୍ର ମୁଁ କଲି ଜଳପ । ॥ ୪୦ ॥

ଯାହା ଶ୍ରୀମନ୍ତ ବା ଐଶ୍ୱର୍ଯ୍ୟମୟ,
ଅବା ଶକ୍ତିଶାଳୀ ଯେ ଯେ ବିଷୟ ।
ତଲେ ଜାଣ ସେହି ବିଷୟ ଚୟ
ମୋ ତେଜଅଂଶରୁ ଜାତ ନିଶ୍ଚୟ । ॥ ୪୧ ॥

ଗୋଟି ଗୋଟି କରି ତୁମ୍ଭେ, ଅର୍ଜୁନ,
ଏତେ ଜାଣିବାର କି ପ୍ରୟୋଜନ
ଏତିକି ବୁଝ ମୋର ଅଂଶ ମାତ୍ର
ମାୟା ଜଗତେ ବ୍ୟାପିଛି ସର୍ବତ୍ର । ॥ ୪୨ ॥



## ଏକାଦଶ ଅଧ୍ୟାୟ (୧-୪)

### ( ବିଶ୍ୱରୂପଦର୍ଶନ ଯୋଗ )

**ଅର୍ଜୁନ କହିଲେ :-**

ମୋତେ ଅନୁଗ୍ରହ କରି ପ୍ରକାଶ
କହିଗଲ ଗୁହ୍ୟ ଅଧ୍ୟାତ୍ମ ଭାଷ
ମୋହନବନ୍ଧ ମୋର ତା ସକାଶ
ପୂରାପୂରି ଲଭିଲଟି ବିନାଶ । ॥ ୧ ॥

ସବିସ୍ତାର ତୁମ୍ଭଠାରୁ ନିଶ୍ଚୟ
ଶୁଣିଲି ଭୂତର ଉଦ୍ଭବ ଲୟ ।
ପଦ୍ମପତ୍ରାକ୍ଷ, ଶୁଣିଲି ଆବର
ଯେତେ ଅକ୍ଷର ମାହାତ୍ମ୍ୟ ତୁମ୍ଭର । ॥ ୨ ॥

ପରମେଶ୍ୱର, ଆପଣାକୁ ଯଥା
ବର୍ଣ୍ଣିଲ ଯଥାର୍ଥ ତାହା ସର୍ବଥା ।
ମୁଁ ସେହି ଈଶ୍ୱର-ରୂପକୁ ତମ
ଦେଖିବାକୁ ଇଚ୍ଛେ ପୁରୁଷୋତ୍ତମ । ॥ ୩ ॥

ସେ ରୂପ ବିଲୋକିବାକୁ ମୁଁ ଶକ୍ତ
ଯୋଗ୍ୟ ବୋଲି, ପ୍ରଭୁ, ହେବେ ବିଚାର ।
ତେବେ ତୁମ୍ଭର ଅବ୍ୟୟ ରୂପରେ
ଯୋଗେଶ୍ୱର ମୋତେ ଦେଖାଅ ଥରେ । ॥ ୪ ॥

## ଶ୍ରୀକୃଷ୍ଣ କହିଲେ :-

ଶତ ପ୍ରକାର ସହସ୍ର ପ୍ରକାର
ପୁଣି ନାନାବର୍ଣ୍ଣ ନାନା ଆକାର
ନାନାବିଧ ମୋ ଦିବ୍ୟରୂପ ଗଣ
ହେ ପାର୍ଥ, ଲକ୍ଷଣେ କର ଗ୍ରହଣ । ॥ ୫ ॥

ଆଦିତ୍ୟ ବସୁ ରୁଦ୍ର ମରୁଦ୍‌ଗଣ
ଦେଖ ଆଉର ଅଶ୍ୱିନୀ ଦୁଜଣ
ଦେଖ ତହିଁରେ ଆଶ୍ଚର୍ଯ୍ୟ ବହୁତ
ଅଦୃଷ୍ଟପୂର୍ବ ଯାହା, ହେ ଭରତ । ॥ ୬ ॥

ଠୁଳ ଭାବେ ଏ ମୋର ଦେହଗତେ
ସଚରାଚର ସମଗ୍ର ଜଗତେ
ଅନ୍ୟ ଯା ଦେଖିବାର ଅଭିଳାଷ
ଯୋଗ୍ୟ ତା ସବୁ ଦେଖ, ଗୁଡ଼ାକେଶ । ॥ ୭ ॥

ମାତ୍ର ତୁମ୍ଭର ନେତ୍ର ଦ୍ୱାରା ତୁହି
ମୋତେ ଦେଖିବାକୁ ପାରିବ ନାହିଁ ।
ମୋ ଐଶ୍ୱର୍ଯ୍ୟ କରିବାକୁ ଲୋକନ
ଦେଉଛି ତୁମ୍ଭଙ୍କୁ ଦିବ୍ୟ ଲୋଚନ । ॥ ୮ ॥

## ସଂଜୟ କହିଲେ :-

ତହିଁ ଉତ୍ତାରୁ ଭାଷି ଏହିପରି
ପାର୍ଥଙ୍କୁ ମହା ଯୋଗେଶ୍ୱର ହରି
ନିଜ ପରମ ଈଶ୍ୱରୀୟ ରୂପ
ପ୍ରଦର୍ଶିତ କଲେ ଭଲେ, ହେ ଭୂପ । ॥ ୯ ॥

ଯହିଁ ବହୁ ନେତ୍ର, ଅସଂଖ୍ୟ ଆସ୍ୟ,
ଆଉର ଅନେକ ଅଦ୍ଭୁତ ଦୃଶ୍ୟ
ଯା ନାନା ଦିବ୍ୟାଭରଣେ ଭୂଷିତ
ବହୁ ଉଦ୍ୟତ ଦିବ୍ୟାୟୁଧ ଯୁକ୍ତ । ॥ ୧୦ ॥

ଯାହା ଦିବ୍ୟ ମାଳା-ବସ୍ତ୍ର ଶୋଭିତ
ପୁଣି ଦିବ୍ୟ ଅଙ୍ଗରାଗ ଚର୍ଚ୍ଚିତ ।
ଯାହା କାନ୍ତ୍ୱଲ୍ୟ ସର୍ବାଶ୍ଚର୍ଯ୍ୟଭର
ଅନନ୍ତ ସର୍ବ ଦିଗେ ମୁଖ ଯାର । ।। ୧୧ ।।

ସହସ୍ର ସଂଖ୍ୟାରେ ସୂର୍ଯ୍ୟରେ ହେବେ
ଏକାବେଳେକେ ନଭେ ଉଦେ ହେବେ ।
ତେବେ ବା ହେବ ସେହି ତେଜ ତୁଲ
ସେ ପୁରୁଷଙ୍କ ଜ୍ୟୋତି ସଙ୍ଗେ ଭୁଲ । ।। ୧୨ ।।

ଦେବଦେବଙ୍କ ସେ ଶରୀର ଗତ
ବହୁଧା ବିଭକ୍ତ ଗୋଟା ଜଗତ
ବିରାଜିତ ଥିବାର ଦୃଶ୍ୟମାନ
ସେତେବେଳେ ଦେଖିଲେ ପାଣ୍ଡୁନନ୍ଦନ । ।। ୧୩ ।।

ଏଥୁ ଅନ୍ତରେ ହୋଇ ସବିସ୍ମୟ
ପୁଲକିତ ଶରୀର ଧନଞ୍ଜୟ
ସେ ଦେବଙ୍କୁ ପ୍ରଣମି ନତଶିରେ
କର ଯୋଡ଼ି କହିଲେ ଏହି ଗିରେ । ।। ୧୪ ।।

## ଅର୍ଜୁନ କହିଲେ :-

ହେ ଦେବ, ତୁମ୍ଭ ଶରୀରେ ତବ
ସମସ୍ତ ଦେବ, ସର୍ବବିଧ ଜୀବ,
ଦୃଶ୍ୟନ୍ତି ପଦ୍ମାସୀନ ବ୍ରହ୍ମା ପୁଣି
ସମସ୍ତ ଋଷି ଆଉ ଦିବ୍ୟ ଫଣୀ । ।। ୧୫ ।।

ତବ ବହୁ ଭୁଜୋଦରାସ୍ୟ ନେତ୍ର
ବଳିଷ୍ଠ ଅନନ୍ତ ରୂପ ସର୍ବତ୍ର
ଦେଖେ, ମାତ୍ର ତା ଆଦି ମଧ୍ୟ ଶେଷ
ଦେଖୁନାହିଁ, ବିଶ୍ୱରୂପ, ବିଶ୍ୱେଶ । ।। ୧୬ ।।

ତୁମ୍ଭେ କିରୀଟ-ଗଦା-ଚକ୍ର-ଧର
ସର୍ବତ ଦୀପ୍ତ ବହ୍ନି ସୂର୍ଯ୍ୟ ପର
ତେଜରେ ମୋ' ଅପ୍ରମେୟ ଦୁର୍ନିରୀକ୍ଷ
ସର୍ବତ ତୁମ୍ଭଙ୍କୁ ଦେଖେ ପ୍ରତ୍ୟକ୍ଷ । ॥ ୧୭ ॥

ତୁମ୍ଭେ ଅକ୍ଷର, ପରବ୍ରହ୍ମ, ଜ୍ଞେୟ
ବିଶ୍ୱର ଶ୍ରେଷ୍ଠ ନିଧାନ, ଅବ୍ୟୟ,
ନିତ୍ୟ ଧର୍ମ ରକ୍ଷକ, ସନାତନ
ପୁରୁଷ ବୋଲି ମାନେ ମୋର ମନ । ॥ ୧୮ ॥

ଅନାଦି ମଧ୍ୟାନ୍ତ, ଅନନ୍ତ ବୀର୍ଯ୍ୟ
ଅନନ୍ତ ବାହୁ, ନେତ୍ରଶଶୀସୂର୍ଯ୍ୟ,
ତୁମ୍ଭ ମୁଖ ଦୀପ୍ତ ହୁତାଶ ବତ
ସ୍ୱୀୟ ତେଜେ ବିଶ୍ୱ କରେ ତପତ । ॥ ୧୯ ॥

ତୁମ୍ଭେ ହିଁ ପରିବ୍ୟାପ୍ତ ଦିଗେ ଦିଗେ
ତଥା ଦେଖା ପୃଥ୍ୱୀରେ ମଧ୍ୟ ଆକାଶେ,
ଦେଖି ତବ ରୂପ ଉଗ୍ର ଅଦ୍ଭୁତ
ହେ ମହାତ୍ମା, ତ୍ରିଲୋକ ଭୟଭୀତ । ॥ ୨୦ ॥

ତୁମ୍ଭ ଅନ୍ତରେ ଏ ଦେବେ ପଶନ୍ତି
କେ ବା କରଯୋଡ଼ି ସ୍ତୁତି ଭଣନ୍ତି, ।
ମହର୍ଷି ସମାନ ସିଦ୍ଧ ସରବ
ସ୍ତୋତ୍ରୁଚ୍ଚରନ୍ତି ତବ ଅର୍ଚ୍ଚି ସ୍ତବ । ॥ ୨୧ ॥

ରୁଦ୍ର, ଆଦିତ୍ୟ, ବସୁ, ବାୟୁ, ସାଧ୍ୟ
ଅଶ୍ୱିନୀ, ବିଶ୍ୱେଦେବା ପିତୃ ମଧ୍ୟ
ଗନ୍ଧର୍ବ, ଯକ୍ଷ, ଦୈତ୍ୟ, ସିଦ୍ଧ ବ୍ରାତ
ତୁମ୍ଭଙ୍କୁ ଦେଖନ୍ତି ହୋଇ ବିସ୍ମିତ । ॥ ୨୨ ॥

ହେ ମହାବାହୁ, ତବ ବହୁ ବକ୍ତ୍ର
ନେତ୍ର, ବାହୁ, ଊରୁ, ପାଦ, ପିଣ୍ଡ
କରାଳଦନ୍ତ ମହାରୂପ, ଦେଖି
ସର୍ବଲୋକ ଭୀତ ତଥା ମୁହିଁ । ॥ ୨୩ ॥

ବିଷ୍ଣୁ, ନଭଃସ୍ପୃଷ୍ଟ ମୂର୍ତ୍ତି ଜାଜ୍ୱଲ୍ୟମାନ
ବିଶାଳ ନେତ୍ର, ବ୍ୟାଦିତ ବଦନ,
ବହୁ ବର୍ଣ୍ଣାଢ୍ୟ ତବ ରୂପ ଦେଖି
ତ୍ରସ୍ତ ମୁଁ, ଧୈର୍ଯ୍ୟ-ଶାନ୍ତି ଲଭୁନାହିଁ । ॥ ୨୪ ॥

ଜଗନ୍ନିବାସ ତୀକ୍ଷ୍ଣଦନ୍ତମୟ
କାଳାଗ୍ନିପ୍ରାୟ ତବ ମୁଖଚୟ
ଦେଖି ମୁଁ ଦିଗଭ୍ରାନ୍ତ, ସୁଖ ନ ଲଭେ,
ହେ ଦେବେଶ, ପ୍ରସନ୍ନ ହୁଅ ଏବେ । ॥ ୨୫ ॥

ଧୃତରାଷ୍ଟ୍ରଙ୍କର ସକଳ ନନ୍ଦନେ
ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଭୂପତିମାନେ,
ଆମ୍ଭ ପକ୍ଷର ମୁଖ୍ୟ ମୁଖ୍ୟ ବୀରେ
ପଶୁଅଛନ୍ତି ତୁମ୍ଭର ଶରୀରେ । ॥ ୨୬ ॥

ତୁମ୍ଭ ଭୟଙ୍କର କରାଳଦନ୍ତ
ମୁଖେ ସେମାନେ ସତ୍ୱର ପଶନ୍ତି
ଶିର ଚୂର୍ଣ୍ଣୀଭୂତ ହୋଇ କେହି ବା
ଦିଶନ୍ତି ଦନ୍ତମଧ୍ୟରେ ରହିବା । ॥ ୨୭ ॥

ନଦୀମାନଙ୍କ ବହୁ ଜଳଧାର
ପାରାବାରକୁ ହିଁ ଯିବା ପ୍ରକାର
ଜ୍ୱାଳାମୟ ତବ ମୁଖ ଗହ୍ୱରେ
ପଶନ୍ତି ନୃଲୋକର ଏହି ବୀରେ । ॥ ୨୮ ॥

ପତଙ୍ଗେ ଜଳନ୍ତା ନିଆଁକୁ ଧାଇଁ
ଯିବାର ପ୍ରାୟ ମରିବାର ପାଇଁ
ଲୋକେ ବି ମରିବାର ପାଇଁ ଜୋରେ
ଧାଇଁ ପଶୁଛନ୍ତି ତବ ମୁଖରେ ।  ॥ ୨୯ ॥

ତବ ଜଳନ୍ତା ମୁଖ ଚାରିପଟେ
ସବୁ ଲୋକଙ୍କୁ ଗ୍ରାସି ଓଠ ଚାଟେ ।
ତେଜୋମୟ କରେ ସାରା ଜଗତେ
ହେ ବିଷ୍ଣୁ, ତବ ଉଗ୍ର ଦୀପ୍ତି ସତେ ।  ॥ ୩୦ ॥

ନମେ, ଦେବବର, ପ୍ରସନ୍ନ ହୁଅ ।
କେ ତୁମ୍ଭେ ଉଗ୍ରରୂପୀ ମୋତେ କୁହ ।
ତବ ଆଦ୍ୟ ପ୍ରବୃତ୍ତି ଜାଣିଚାହୁଁଛୁ ।
ଯେଣୁ ସେ ତତ୍ତ୍ୱ ମୁଁ ନ ଜାଣେ କିଛୁ ।  ॥ ୩୧ ॥

**ଶ୍ରୀକୃଷ୍ଣ କହିଲେ :-**

ମୁଁ ଲୋକନାଶକ ପ୍ରବୃଦ୍ଧ କାଳ
ଲୋକ ସଂହାରାର୍ଥ ଉଦ୍ୟ ଏ ସ୍ଥଳ,
ଯେତେ ଯୋଦ୍ଧା ଅଛନ୍ତି ଶତ୍ରୁ ଦଳେ
ଭବିଷ୍ୟେ ନ ରହିବେ ଏ ସକଳେ ।  ॥ ୩୨ ॥

ଉଠ, ଯଶ ଲଭ, ଜିଣି ବଇରି ।
ଭୋଗ କର ସମୃଦ୍ଧ ରାଜ୍ୟଶିରୀ ।
ଏହାଙ୍କୁ ମୁଁ ଆଗୁଁ ବଧି ସାରିଛି ,
ନିମିତ୍ତ ମାତ୍ର ହୁଅ, ସବ୍ୟସାଚୀ ।  ॥ ୩୩ ॥

ମୁଁ ବଧିଅଛି ଜୟଦ୍ରଥ, ଦ୍ରୋଣ,
ଭୀଷ୍ମ, କର୍ଣ୍ଣ ଓ ଅନ୍ୟ ଯୋଦ୍ଧୃଗଣ ।
ବ୍ୟଥିତ ନୋହି ତୁମ୍ଭେ କର ବଧ,
ଯୁଦ୍ଧେ ଜିଣିବ ଶତ୍ରୁ, କର ଯୁଦ୍ଧ ।  ॥ ୩୪ ॥

## ସଂଜୟ କହିଲେ :-

କେଶବଙ୍କ ବାଣୀ ଶୁଣି କିରୀଟୀ
କର ଯୋଡ଼ି ନମସ୍କାର କରି ଟି,
ଥରହର ହୋଇ ବିଶେଷ ଡରେ
ଭାଷିଲେ ବଚନେ ଗଦ୍‌ଗଦ ସ୍ୱରେ । ॥ ୩୫ ॥

## ଅର୍ଜୁନ କହିଲେ

ହୃଷୀକେଶ, ତୁମ୍ଭ କୀର୍ତ୍ତି ଯୋଗୁଁ ତ
ହୃଷ୍ଟ, ଅନୁରକ୍ତ ରହେ ଜଗତ,
ରାକ୍ଷସେ ଯାନ୍ତି ଭୟେ ଦିଗ ବିଦିଗ,
ପ୍ରଣମନ୍ତି ତୁମ୍ଭଙ୍କୁ ସିଦ୍ଧ ସଙ୍ଘ । ॥ ୩୬ ॥
ମହାତ୍ମା, ତୁମ୍ଭଙ୍କୁ ନ ନମନ୍ତେ କି ?
ତୁମ୍ଭେ ଆଦି କର୍ତ୍ତା ବ୍ରହ୍ମା ହିଁ ନିଜ,
ଯେଣୁ ଅକ୍ଷର ସଦସତ-ପର
ଅନନ୍ତ, ଦେବେଶ, ଜଗଦାଧାର । ॥ ୩୭ ॥
ତୁମ୍ଭେ ଏ ବିଶ୍ୱର ପରନିଧାନ
ଆଦିଦେବ ଓ ପୁରୁଷ ପୁରାଣ,
ତୁମ୍ଭେ ଜ୍ଞାତା, ଜ୍ଞେୟ, ଶ୍ରେଷ୍ଠ ଆଶ୍ରୟ
ତୁମ୍ଭେ ଅନନ୍ତ ରୂପ ବିଶ୍ୱମୟ । ॥ ୩୮ ॥
ତୁମ୍ଭେ ବାୟୁ, ଯମ, ଅଗ୍ନି, ବରୁଣ
ଶଶୀ, ବ୍ରହ୍ମା, ପ୍ରପିତାମହ ଗୁଣ,
ସହସ୍ର ବାର ତୁମ୍ଭଙ୍କୁ ଜୁହାର
ଆଉର ବାର ବାର ନମସ୍କାର । ॥ ୩୯ ॥
ସର୍ବ, ତୁମ୍ଭଙ୍କୁ ଆଗୁଁ ପଛଭାଗୁଁ
ପୁଣି ନମସ୍କାର ସର୍ବ ଦିଗୁଁ,
ଅନନ୍ତ ବୀର୍ଯ୍ୟ, ବିକ୍ରମ ଅମାପ
ତୁମ୍ଭେ ସର୍ବବ୍ୟାପୀ, ସର୍ବ ସ୍ୱରୂପ । ॥ ୪୦ ॥

ଏ ତୁମ୍ଭ ମହିମାକୁ ମୁଁ ନ ଜାଣି
ପ୍ରମାଦେ ପ୍ରୀତିରେ କି ସଖା ମଣି
ହେ କୃଷ୍ଣ ଯାଦବ ସଖା ମୁଁ ସତେ
ତୁମ୍ଭଙ୍କି ଯା କହିଛୁ ଧୃଷ୍ଟତରେ । ॥ ୪୧ ॥

ବିହାରେ, ଶୟନେ ଆସନେ ଭୋଜନେ
ଜନସମାଗମେ ଅବା ନିର୍ଜନେ
ଅଚ୍ୟୁତ, କରିଛି ଯା ଅମାନନା,
ହେ ଅପ୍ରମେୟ, ତା କର ମାର୍ଜନା । ॥ ୪୨ ॥

ତୁମ୍ଭେ ଏ ଚରାଚର ଜଗତର
ଜନକ, ପୂଜ୍ୟ ଓ ଗୁରୁ ପ୍ରବର
ତୁମ୍ଭ ତୁଲ୍ୟ ଅନ୍ୟ ନାହିଁ ତ୍ରିଲୋକେ
ଅତୁଲ୍ୟ ପ୍ରଭାବ, ବଳିବ ବା କେ ? ॥ ୪୩ ॥

ପୂଜ୍ୟ ପ୍ରଭୁ, ଦେଣୁ ତଳେ ମୁଁ ଗଡେ
ପ୍ରଣମି ତବ ପ୍ରସନ୍ନତା ଲୋଡେ,
ଦେବ, କ୍ଷମା କର ପ୍ରିୟାରେ ପ୍ରିୟ
ମିତ୍ରେ ମିତ୍ର, ପୁତ୍ରେ ପିତାର ପ୍ରାୟ । ॥ ୪୪ ॥

ଦେଖି ଅଦୃଷ୍ଟପୂର୍ବ ହେଲି ହୃଷ୍ଟ
ମାତ୍ର ମୋ ମନ ହେଲା ଭୟାବିଷ୍ଟ,
ପ୍ରସନ୍ନେ ଦେବେଶ ଜଗନ୍ନିବାସ
ପୂର୍ବ ରୂପ ହିଁ ମୋ ଆଗେ ପ୍ରକାଶ । ॥ ୪୫ ॥

ସେ ମୁକୁଟ ଗଦା ଚକ୍ର କର
ରୂପ ଦେଖିବାକୁ ହିଁ ଇଚ୍ଛା ମୋର,
ହେ ସହସ୍ରବାହୁ, ହେ ବିଶ୍ୱମୂର୍ତ୍ତି
ହୁଅ ସେହି ଚତୁର୍ଭୁଜ ଆକୃତି । ॥ ୪୬ ॥

ପ୍ରସନ୍ନ ହେବାରୁ ହେଲି ମୁଁ ହୃଷ୍ଟ
ଆତ୍ମ ଯୋଗେ ଆଦ୍ୟ ଅନନ୍ତ ଶ୍ରେଷ୍ଠ
ଦୀପ୍ତ ବିଶ୍ୱରୂପେ, ତୁମ୍ଭ ବିନା ଆନ
ଯାହା କେହି ଦେଖି ନାହିଁ, ଅର୍ଜୁନ । ।। ୪୭ ।।

ବେଦ, ଯଜ୍ଞ, ଅଧ୍ୟୟନ ଆଚରି
ଦାନ, କ୍ରିୟା କି ଉଗ୍ରତପ କରି
କୁରୁ ପ୍ରବର, ମୋତେ ଏ ରୂପରେ
ଦେଖି ପାରିବ କେ ନର ଲୋକରେ । ।। ୪୮ ।।

ଦେଖି ସେ ଘୋର ରୂପକୁ ମୋହର
ବ୍ୟଥା ବା ମୂଢ଼ତା ନୋହୁ ତୁମ୍ଭର ।
ମନେ ପ୍ରୀତିରଖି, ଭୟ ଉପେକ୍ଷି
ମୋର ଏ ରୂପକୁ ଦେଖ ନିରେଖି । ।। ୪୯ ।।

## ସଂଜୟ କହିଲେ :-

ବାସୁଦେବ ଅର୍ଜୁନେ ଏହା କହି
ପୁଣି ପୂର୍ବ ସ୍ୱ ରୂପକୁ ପ୍ରକାଶି,
ପରମାତ୍ମା ସୌମ୍ୟ ଶରୀର ହେଲେ
ସେ ଭୟାର୍ତ୍ତଙ୍କୁ ଆଶ୍ୱାସନ ଦେଲେ । ।। ୫୦ ।।

## ଅର୍ଜୁନ କହିଲେ :-

ତୁମ୍ଭର ଏ ସୌମ୍ୟ ମାନୁଷ ମୂର୍ତ୍ତି
ଅବଲୋକନ କରି ମୁଁ ସମ୍ପ୍ରତି,
ପୁନରପି ହୋଇଲି ସଚେତନ
ପ୍ରକୃତିସ୍ଥ ହେଲି, ହେ ଜନାର୍ଦ୍ଦନ । ।। ୫୧ ।।

**ଶ୍ରୀକୃଷ୍ଣ କହିଲେ :-**

ଅତୀବ ଦୁର୍ଦ୍ଦର୍ଶନୀୟ ମୋହର
ଏ ଯେଉଁ ରୂପକୁ କଲ ନଜର,
ଦେବତାଗଣେ ସୁଦ୍ଧା ଚିରଦିନ
ଇଚ୍ଛୁଛନ୍ତି ଏ ରୂପ ଦରଶନ । ॥ ୫୨ ॥

ତୁମ୍ଭେ ଦେଖିଲ ମୋତେ ଯେଉଁ ପରି
ବେଦ ମାର୍ଗେ ଅବା ତପ ଆଚରି
ଦେଇ ଦାନ କି କରି ଯଜ୍ଞମାନ
ବିଲୋକି ନ ପାରିବେ କେହି ଆନ । ॥ ୫୩ ॥

ମାତ୍ର ମୋତେ ଏ ରୂପେ ଯଥାର୍ଥରେ
ଅନନ୍ୟମନା ଭକତି ପଥରେ,
ଜାଣିବା ଦେଖିବା ସମ୍ଭବ ହେତେ
ସମ୍ଭବ ପଶିବା ମୋ ଅନ୍ତର୍ଗତେ । ॥ ୫୪ ॥

ଯେଉଁ ଭକ୍ତ ମୋର କର୍ମେ ତତ୍ପର,
ଯେ ବାଞ୍ଛନ୍ତି ମୋତେ ମାନେ ପର,
ସର୍ବ ଜୀବେ ଯେ ଛାଡ଼େ ବୈରଭାବ,
ସେ ମୋତେ ଲଭିପାରେ, ହେ ପାଣ୍ଡବ । ॥ ୫୫ ॥



# ଦ୍ୱାଦଶ ଅଧ୍ୟାୟ (୧)

## ( ଭକ୍ତିଯୋଗ )

**ଅର୍ଜୁନ କହିଲେ :-**

ନିତ୍ୟ ଭକ୍ତ ରହି ସଦାନୁରକ୍ତ
ଅନ୍ୟେ ଯେ ଧ୍ୟାୟନ୍ତି ଅକ୍ଷର ଅବ୍ୟକ୍ତ
କରୁଥାନ୍ତି ଉପାସନା ତୁମ୍ଭର
ଦୁଇ ମଧ୍ୟେ କେ ଯୋଗୀ ଶ୍ରେଷ୍ଠତର ? ॥ ୧ ॥

## ଶ୍ରୀକୃଷ୍ଣ କହିଲେ :-

ଯେ ଜନ ମନ ଲଗାଇ ମୋ ଠାରେ
ନିତ୍ୟ ଯୁକ୍ତ ରହି ପର ଶ୍ରଦ୍ଧାରେ
ମୋର ଉପାସନା କରେ ସତତ
ସେ ଶ୍ରେଷ୍ଠତର ଯୋଗୀ, ମୋର ମତ । ॥ ୨ ॥

ମାତ୍ର ଯେ ବା ସର୍ବବ୍ୟାପୀ ଅଜ୍ଞେୟ
କୂଟସ୍ଥ ଅବ୍ୟକ୍ତ ଅଚିନ୍ତନୀୟ
ଅଚଳ ତଥା କ୍ଷରଣ ବିହୀନ
ବ୍ରହ୍ମଙ୍କୁ କରୁଥାଏ ଉପାସନ । ॥ ୩ ॥

ସଂଯତ କରି ସ୍ୱଇନ୍ଦ୍ରିୟେ ଆଉ
ସବୁଠାରେ ଥାପି ସମବୁଦ୍ଧିର
ରତ ରହେ ଯେ ସର୍ବଜନ ହିତେ
ସେ ମୋତେ ନିଶ୍ଚୟ ଲଭେ ବିହିତେ । ॥ ୪ ॥

ଯା ଚିତ୍ତ ଅବ୍ୟକ୍ତେ ଆସକ୍ତରତ
ତାହାର କଷ୍ଟ ଅଧିକତର ତ,
ଯେଣୁ ଦେହଧାରୀ କଷ୍ଟରେ ନିକି
ଧରି ପାରଇ ଅବ୍ୟକ୍ତ ଗତିକି । ॥ ୫ ॥

ମାତ୍ର ସର୍ବକର୍ମ ମୋତେ ଅର୍ପଣ
କରି ଯେ ବା ହୋଇ ମୋ ପରାୟଣ,
ହୋଇ ଐକାନ୍ତିକ ଯୋଗପର ହିଁ
ମୋତେ ଧ୍ୟାଇ ଉପାସନ କରନ୍ତି । ॥ ୬ ॥

ଆଉ ମୋ ଠାରେ ଯେ ଆବିଷ୍ଟ ଚିତ୍ତ
ସେହି ସମସ୍ତ ଜନଙ୍କୁ ନିଶ୍ଚିତ,
ମର ସଂସାର ପାରାବାରୁ ଖରେ
ହେ ପାର୍ଥ, ମୁଁ ଭଲେ ଉଦ୍ଧାର କରେ । ॥ ୭ ॥

କେବଳ ମୋର ଚିନ୍ତା ଥାଏ ମନ
ବୁଦ୍ଧିକୁ ମୋଠି କର ନିବେଶନ,
ମୋ ଠାରେ କେବଳ ଏଥି ଉତ୍ତର
ଠାକି ରହିବ, ସଂଶୟ ନ କର । ॥ ୮ ॥

ଯେବେ ମୋ ଠାରେ ଚିତ୍ତକୁ ତୁମ୍ଭର
ସ୍ଥିର ଭାବେ ଲଟକାଇ ନ ପାର,
ମୋତେ ଲଭିବା ଇଚ୍ଛା, ଧନଞ୍ଜୟ
କର ଅଭ୍ୟାସ ଯୋଗର ଆଶ୍ରୟ । ॥ ୯ ॥

ଅଭ୍ୟାସକୁ ସୁଦ୍ଧା ଅଶକ୍ୟ ହେଲେ
ମୋ କର୍ମ ପରାୟଣ ହୁଅ ହେଲେ
ଯେବେ ମୋ ସକାଶେ କର୍ମ କରିବ
ତେବେ ବି ସିଦ୍ଧିକୁ ଲଭି ପାରିବ । ॥ ୧୦ ॥

ଯଦି ତାହା ସୁଦ୍ଧା କରି ନ ପାର
ମୋ ସଙ୍ଗଯୋଗକୁ ଆଶ୍ରୟ କର,
ହୋଇ ସଯତାତ୍ମବାନ କେବଳ
ତ୍ୟାଗ କର ସର୍ବ କର୍ମର ଫଳ । ॥ ୧୧ ॥

ଅଭ୍ୟାସଠାରୁ ଶ୍ରେୟ ନିଶ୍ଚେ ଜ୍ଞାନ
ଜ୍ଞାନ ଅପେକ୍ଷା ଶ୍ରେୟତର ଧ୍ୟାନ,
ଧ୍ୟାନୁଁ ଶ୍ରେଷ୍ଠ କର୍ମଫଳ ତ୍ୟାଗ ଯେ
ତ୍ୟାଗୁଁ ଅନନ୍ତର, ଶାନ୍ତି ଉପୁଜେ । ॥ ୧୨ ॥

ସମସ୍ତ ଜୀବେ ଯେ ଦ୍ୱେଷ ବର୍ଜିତ
ଯେ ମୈତ୍ରୀଶୀଳ ସକରୁଣ ଚିତ୍ତ,
ଯେ ନିର୍ମମ, କ୍ଷମୀ, ନିରହଂକାର
ସୁଖ ଦୁଃଖରେ ସମଚିତ୍ତ ଯାର । ॥ ୧୩ ॥

ସମତାତ୍ମା ଯେ ସଦା ଯୋଗଯୁକ୍ତ
ସନ୍ତୋଷଶୀଳ ମୋର ସେହିଁ ଭକ୍ତ,
ଦୃଢ଼ ନିଶ୍ଚୟ ହୋଇ ବୁଦ୍ଧି ଚିତ୍ତ
ମୋତେ ଅର୍ପେ ସେ ମୋ ପ୍ରିୟ ନିଶ୍ଚିତ । ॥ ୧୪ ॥

ଯେ ବା ଉଦ୍‌ବିଗ୍ନ ନ କରେ ଲୋକରେ
ଏ ଲୋକ ଯାକୁ ଉଦ୍‌ବିଗ୍ନ ନ କରେ,
ଯେ ହର୍ଷ, ଦ୍ୱେଷ, ଉଦ୍‌ବେଗ ଓ ଭୟ
ସବୁରୁ ମୁକ୍ତ ଯେ ଜାଣ ମୋ ପ୍ରିୟ । ॥ ୧୫ ॥

ମୋ ଭକ୍ତ ଯେ ସବୁରେ ସ୍ପୃହାହୀନ
ଯେ ଶୁଚିବନ୍ତ, ଦକ୍ଷ, ଉଦାସୀନ,
ଯେ ଛାଡ଼େ ସର୍ବ ଉଦ୍ୟମ ଆବର
ଯେ ବ୍ୟଥାହୀନ ସେ ପ୍ରିୟ ମୋହର । ॥ ୧୬ ॥

ଯେ ନୁହେଁ ହୃଷ୍ଟ ଯେ ଦ୍ୱେଷରହିତ
ଯାର ଶୋକ ନାହିଁ, ଇଚ୍ଛା ନାହିଁତ,
ଯେ ଶୁଭ-ଅଶୁଭ କରେ ବର୍ଜନ
ଭକ୍ତିବନ୍ତ ସେହି ମୋ ପ୍ରିୟ ଜନ । ॥ ୧୭ ॥

ଯେ ସମଚିତ୍ତ ଶତ୍ରୁ ମିତ୍ର ଠାବ
ମାନେ ଅପମାନେ ଯା ସମଭାବ,
ଯେ ଶୀତ ଉଷ୍ଣେ ତଥା ସୁଖ ଦୁଃଖେ
ସମାନ ଯେସନେ, ଆସକ୍ତି ନ ରଖେ । ॥ ୧୮ ॥

ଯେ ନିନ୍ଦା ସ୍ତୁତିକୁ ସମସା ଭାବେ
ଯେ ମୌନୀ ଯେ ସନ୍ତୁଷ୍ଟ ଯଥା ଲଭେ,
ଯେ ଦୃଢ଼ମନା, ନାହିଁ ଯାର ଘର
ସେ ଭକ୍ତିମନ୍ତ ମୋର ପ୍ରିୟ ନର । ॥ ୧୯ ॥

ପୂର୍ବୋକ୍ତ ଏ ଅମର ଧରମରେ
ଶ୍ରଦ୍ଧାବନ୍ତ ମୋ ଭକ୍ତ ଯେଉଁ ନରେ
ମୋତେ ଉପାସନ୍ତି ମାନି ପରମ
ସେମାନେ ସିନା ମୋର ପ୍ରିୟତମ । ॥ ୨୦ ॥



# ତ୍ରୟୋଦଶ ଅଧ୍ୟାୟ (୧-୪)

## ( କ୍ଷେତ୍ର କ୍ଷେତ୍ରଜ୍ଞ ବିଭାଗଯୋଗ )

**ଶ୍ରୀକୃଷ୍ଣ କହିଲେ :-**

କୌନ୍ତେୟ ଯେଉଁ ଶରୀର ଏହି ତ
କ୍ଷେତ୍ର ନାମରେ ହୁଏ ଅଭିହିତ,
ଏ ଭେଦ ଯେ ଜାଣେ ଜାଣିବା ଲୋକେ
ତାଙ୍କୁ କ୍ଷେତ୍ରଜ୍ଞ ବୋଲନ୍ତି ଏ ଲୋକେ । ॥ ୧ ॥

ହେ ଭାରତ, ସେତେ କ୍ଷେତ୍ରମାନ
ମୁଁ ତହିଁ କ୍ଷେତ୍ରଜ୍ଞ ବୋଲି ବି ଜାଣ,
କ୍ଷେତ୍ର ତଥା କ୍ଷେତ୍ରଜ୍ଞଙ୍କୁ ହିତରେ
ଜାଣିବା ଜ୍ଞାନ ଜ୍ଞାନ ମୋ ମତରେ । ॥ ୨ ॥

କ୍ଷେତ୍ରଟି କିସ, କିସ ତା' ସ୍ୱଭାବ
କିସ ତା ବିକାର, କେ ମୂଳଠାବ,
କ୍ଷେତ୍ରଜ୍ଞ କେ, ତାଙ୍କ ପ୍ରଭାବ କିସ
ମୋ ଠାରୁ ତାହା ଶୁଣ ସବିଶେଷ । ॥ ୩ ॥

ଋଷିଙ୍କ ବଚନେ, ହେତୁ ବାଦରେ
ନିଃସନ୍ଦିଗ୍ଧ ବ୍ରହ୍ମସୂତ୍ର ପଦରେ,
ବେଦମନ୍ତ୍ରେ ବିବିଧମତେ ଏହା
ଭିନ୍ନ ଭିନ୍ନ ଭାବେ ହୋଇଛି କୁହା । ॥ ୪ ॥

ଅଧ୍ୟାୟ-୧୩ (୫-୧୦)

ପାଞ୍ଚୋଟି ମହାଭୂତ, ଅହଂକାର,
ବୁଦ୍ଧି ପୁଣି ମୂଳପ୍ରକୃତି ଆର,
ମନ ସମେତ ଏଗାର ଇନ୍ଦ୍ରିୟ
ଇନ୍ଦ୍ରିୟଗୋଚର ପାଞ୍ଚ ବିଷୟ । ॥ ୫ ॥

ଇଚ୍ଛା-ଦ୍ୱେଷ ଓ ସୁଖଦୁଃଖ ଆର
ଚେତନା-ଧୈର୍ଯ୍ୟ ସବୁର ଆଧାର
ଏହି କ୍ଷେତ୍ର ଯାହା ବିକାରବଶ
ବର୍ଣ୍ଣିତ ହୋଇଅଛି ସବିଶେଷ । ॥ ୬ ॥

ନିରଭିମାନତା, ଅଦାମ୍ଭିକତା,
ଅହିଂସତା, କ୍ଷମା, ଅକୁଟିଳତା,
ପବିତ୍ରତା, ଆଚାର୍ଯ୍ୟ ଉପାସନ,
ସ୍ଥିରତା ତଥା ଆତ୍ମସଂଯମନ । ॥ ୭ ॥

ବୈରାଗ୍ୟ ଇନ୍ଦ୍ରିୟାର୍ଥ ବିଷୟରେ
ଆଦରି ସେ ତେଜଇ ଅହଂକାରେ,
ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି-ଯନ୍ତ୍ରଣା-
ଦୋଷ ନେଇ ନକରେ ଆଲୋଚନା । ॥ ୮ ॥

ପୁତ୍ର-ପତ୍ନୀ ଗୃହ ଆଦରେ ଆର
ସମ୍ପର୍କ ବା ଆସକ୍ତି ନୋହେ ତାର,
ଇଷ୍ଟ ଅନିଷ୍ଟ ଯେବେ ଯାହା ମିଳେ
ସମଚିତ୍ତତା ତହିଁ ସବୁବେଳେ , ॥ ୯ ॥

ଯୋଗଯୁକ୍ତ ରହି ମୋଠି କେବଳ
ରଖିବା ଅନନ୍ୟ ଭକ୍ତି ଅଟଳ ।
ନିରୋଳ ଦେଶରେ ନିବାସ ରଚି
ଜନ ସମାଗମ ପ୍ରତି ଅରୁଚି । ॥ ୧୦ ॥

ଅଧ୍ୟାତ୍ମ ଜ୍ଞାନରେ ସତତ ଶୋଧ
ତଥା ତତ୍ତ୍ୱଜ୍ଞାନ ଉଦ୍ଦେଶ୍ୟ ବୋଧ ।
ଜ୍ଞାନ ପଦବାଚ୍ୟ ନିଜ ଏମାନ
ଏଥୁଁ ଯା ଭିନ୍ନତା ସବୁ ଅଜ୍ଞାନ । ‖ ୧୧ ‖

ଠିକେ କହୁଛି ଯାହା ଜ୍ଞେୟ ତତ୍ତ୍ୱ,
ଯାକୁ ଜାଣନ୍ତେ ମିଳେ ଅମୃତତ୍ୱ ।
ତାହା ହିଁ ଅନାଦି ପରଂବ୍ରହ୍ମ ତ
ଯା ନୁହେଁ ସତ କି ନୁହେ ଅସତ । ‖ ୧୨ ‖

ସର୍ବତ୍ର ତାଙ୍କ ପାଣି ପାଦ ତଥା
ସର୍ବତ୍ର ନୟନ ବଦନ ମଥା,
ସର୍ବତ୍ର ତାଙ୍କ କର୍ଣ୍ଣ ସର୍ବୋପରି
ଅଛନ୍ତି ସାରା ଲୋକକୁ ଆବୋରି । ‖ ୧୩ ‖

ସର୍ବ ଇନ୍ଦ୍ରିୟଗୁଣେ ସେ ସ୍ଫୁରନ୍ତି
କିନ୍ତୁ ଇନ୍ଦ୍ରିୟ ବର୍ଜିତ ଅଟନ୍ତି ।
ସେ ନିର୍ଲିପ୍ତ, ସେ ପୋଷକ ସବୁରି,
ନିର୍ଗୁଣ କିନ୍ତୁ ଗୁଣଭୋଗକାରୀ । ‖ ୧୪ ‖

ପ୍ରାଣୀଙ୍କର ସେ ବାହାର ଭିତର
ସେ ନିଶ୍ଚୟ ଅଚର ଆର ଚର ।
ହେବାରୁ ସୂକ୍ଷ୍ମ, ସେ ଅଜ୍ଞେୟ ଅଟେ
ଦୂରେ ଥାଏ ତଥା ଥାଏ ନିକଟେ । ‖ ୧୫ ‖

ହେଲେ ହେଁ ଅବିଭକ୍ତ ପ୍ରାଣୀଗତେ
ସ୍ଥିତ ହୋଇଥାଇ ବିଭକ୍ତ ମତେ ।
ସେ ଜ୍ଞେୟ, କରେ ପ୍ରାଣୀଙ୍କ ପୋଷଣ,
ସେ ନାଶକାରୀ, ସୃଷ୍ଟିକର୍ତ୍ତା ପୁଣ । ‖ ୧୬ ‖

ସେ ପୁଣି ଜ୍ୟୋତି ଜ୍ୟୋତିଷ୍ମାନଙ୍କର
ଅନ୍ଧକାରର ବିପକ୍ଷ ନକର ।
ସେ ଜ୍ଞାନ, ଜ୍ଞେୟ, ଜ୍ଞାନଲଭ୍ୟ ଜାଣ
ସବୁର ହୃଦରେ ତା ଅଧିଷ୍ଠାନ । ।। ୧୭ ।।

କ୍ଷେତ୍ର, ଜ୍ଞାନ ଓ ଜ୍ଞେୟ ଏ ତିନିଙ୍କ
ଏହିପରି ଠୁଳେ ବର୍ଣ୍ଣିଲି ନିଙ୍କ ।
ଏହା ବୁଝି ଭଲେ ମୋ ଭକ୍ତଜନ
ମୋର ଭାବକୁ ହୁଅଇ ଭାଜନ । ।। ୧୮ ।।

ପ୍ରକୃତିକୁ ଓ ପୁରୁଷକୁ ପୁଣ
ଉଭୟଙ୍କୁ ଅନାଦି ବୋଲି ଜାଣ
ଯେତେ ଯେତେ ବିକାର ଗୁଣଜାତ
ସବୁ ପ୍ରକୃତିରୁ ହୁଅନ୍ତି ଜାତ । ।। ୧୯ ।।

କାର୍ଯ୍ୟକାରଣ କର୍ତ୍ତୃତ୍ୱ ବିଷୟେ
ହେତୁ ପ୍ରକୃତି ବୋଲି କୁହାଯାଏ ।
ଭୋଗ ବିଷୟରେ ସୁଖ ଦୁଃଖର
ହେତୁ ପୁରୁଷ ବୋଲନ୍ତି ଆବର । ।। ୨୦ ।।

ପୁରୁଷ ହିଁ ରହି ସେ ପ୍ରକୃତିରେ
ପ୍ରକୃତିଜ ଗୁଣକୁ ଭୋଗ କରେ
ତାର ଗୁଣ ସଂସର୍ଗ ହିଁ ମହାଶ
ସଦସତ୍ ଯୋନିରେ ହୁଏ ପ୍ରକାଶ । ।। ୨୧ ।।

ଦେହେ ଥାଇ ପୁରୁଷ ଦେହୁ ପର
ସେ ଦର୍ଶକ, ଅନୁମନ୍ତା ଆବର ।
ସେ ଭର୍ତ୍ତା, ମହେଶ, ଭୋଗକରନ୍ତା
ପରମେଶ୍ୱର ସେ ବୋଲନ୍ତି ତଥା । ।। ୨୨ ।।

ପ୍ରକୃତିକୁ ପୁରୁଷଙ୍କୁ ଯେ ଜନ
ଗୁଣ ସହିତ ବୁଝଇ ଏସନ ।
ଥିଲେ ହେଁ ସେ ବିବିଧ ଅବସ୍ଥାରେ
ଜନ୍ମ ତାର ନ ହୁଏ ଆଉ ବାରେ । ॥ ୨୩ ॥

ଆତ୍ମଧ୍ୟାନ ଆଚରି କେତେ ଲୋକେ,
ସାଂଖ୍ୟଯୋଗ ଆଶ୍ରାରେ ଆଉ ଯୋକେ,
ପୁଣି କର୍ମଯୋଗ ସାଧି ଅପରେ
ଦେଖି ଥାଆନ୍ତି ଆତ୍ମାକୁ ଆତ୍ମାରେ । ॥ ୨୪ ॥

ମାତ୍ର ଆଉ କେ ଏ ତତ୍ତ୍ୱ ଜାଣି
ଉପାସନ୍ତି ଅନ୍ୟ ମୁଖରୁ ଶୁଣି ।
ପରକଥା ଯେନା ସେମାନେ ହେଲେ
ମୃତ୍ୟୁ ଏମନ୍ତେ ତରନ୍ତି ହେଲେ । ॥ ୨୫ ॥

ଭରତର୍ଷଭ, ସ୍ଥାବର ଜଙ୍ଗମ
ଯା କିଛି ସତ୍ତ୍ୱ ଲଭିଛି ଜନମ ।
କ୍ଷେତ୍ର-କ୍ଷେତ୍ରଜ୍ଞଙ୍କ ସଙ୍ଗମୁ କେବଳ
ଜନମ ଲଭନ୍ତି ସେହି ସକଳ । ॥ ୨୬ ॥

ଯେ ବିନାଶଶୀଳ ସାରା ବିଶ୍ୱରେ
ଦେଖେ ଅବିନାଶୀ ପରମେଶ୍ୱରେ
ଥିବାର ସର୍ବଭୂତେ ସମ ଭାବେ
ସେ ଏକା ଜାଣ ଦର୍ଶକ ଏ ଭବେ । ॥ ୨୭ ॥

ସେ ଯେଣୁ ଦେଖନ୍ତି ସମଭାବରେ
ଏକା ଈଶ୍ୱରଙ୍କୁ ସବୁଠାବରେ ।
ଆତ୍ମାକୁ ଆତ୍ମାରେ ନାଶନ୍ତି ନାହିଁ
ପରଗତି ଲଭନ୍ତି ସେଥିପାଇଁ । ॥ ୨୮ ॥

ମାନ ପ୍ରକୃତି ଦ୍ୱାରା ହିଁ ଜଗତେ
କର୍ମମାନ ହେଉଛି ସବୁମତେ
ଆତ୍ମା ଅକର୍ତ୍ତା ବୋଲି ଯେ ଜାଣିବ
ଜ୍ଞାନୀ ପଦେ ତାହାକୁ ହିଁ ଗଣିବ । ॥ ୨୯ ॥

ଜବକ୍ତ ଭୂତସୃଷ୍ଟିକୁ ଯେବେ କେ
ଭଲେ ଅନନ୍ୟାଶ୍ରିତ ଥିବା ଦେଖେ
ଦେଖେ ତହୁଁ ହିଁ ହେବା ବିସ୍ତାରଣ
ତେବେ ସେ ହୋଇଯାଏ ବ୍ରହ୍ମ ଜାଣ । ॥ ୩୦ ॥

ହୋଇଥିବାରୁ ଅନାଦି ନିର୍ଗୁଣ
ଏ ପରମାତ୍ମା ଅବିନାଶୀ ପୁଣ ।
ହେ କୌନ୍ତେୟ, ସେ ଥିଲେ ହେଁ ଶରୀରେ,
କିଛି ନ କରେ, ନିର୍ଲିପ୍ତ ସବୁରେ । ॥ ୩୧ ॥

ଯେମନ୍ତେ ଏ ଆକାଶ ସର୍ବବ୍ୟାପ୍ତ
ସୂକ୍ଷ୍ମ ହେବାରୁ କାହିଁ ନୁହେଁ ଲିପ୍ତ ।
ତେମନ୍ତେ ଥିଲେ ହେଁ ସର୍ବ ଶରୀରେ
ଏ ଆତ୍ମା ଲିପ୍ତ ନ ହୁଏ କାହିଁରେ । ॥ ୩୨ ॥

ହେ ଭାରତ, ଯେପରି ଏକ ରବି
ପ୍ରକାଶ କରନ୍ତି ଯାହା ପୃଥିବୀ
ଏହି ଆତ୍ମା କ୍ଷେତ୍ରୀ ସେହି ସଦୃଶ
ସାରା କ୍ଷେତ୍ରକୁ କରନ୍ତି ପ୍ରକାଶ । ॥ ୩୩ ॥

ଜ୍ଞାନନେତ୍ରେ ଦେଖିବାକୁ ଯେ ଶକ୍ୟ
କ୍ଷେତ୍ର କ୍ଷେତ୍ରଜ୍ଞ ମଧ୍ୟର ପାର୍ଥକ୍ୟ
ତଥା ଭୂତ ପ୍ରକୃତିରୁ ମୁକତି
ସେ ଜନ ଲଭଇ ପରମଗତି । ॥ ୩୪ ॥



(୧-୫)

# ଚତୁର୍ଦ୍ଦଶ ଅଧ୍ୟାୟ

## ( ଗୁଣତ୍ରୟବିଭାଗ ଯୋଗ )

**ଶ୍ରୀକୃଷ୍ଣ କହିଲେ :-**

ଯେନ କହୁଛି ଜ୍ଞାନ ମଧ୍ୟେ ସାର
ସେ ପରମ ଜ୍ଞାନକୁ ପୁନର୍ବାର ।
ଯେଉଁ ଜ୍ଞାନ ଜାଣି ମୁନି ସକଳେ
ପରମ ସିଦ୍ଧି ଲଭିଛନ୍ତି କାଳେ । ॥ ୧ ॥

ଏ ଜ୍ଞାନ ଆଶ୍ରିତ ଯେତେକ ଜଣ
ସେ ଲଭନ୍ତି ମୋ ସମାନ ଲକ୍ଷଣ ।
ସେ ନୁହନ୍ତି ଜାତ ସୃଷ୍ଟି ସମୟେ,
ତଥା ବ୍ୟଥିତ ନୁହନ୍ତି ପ୍ରଳୟେ । ॥ ୨ ॥

ମହଦ୍ ବ୍ରହ୍ମ ଜାଣ ମୋ ଗର୍ଭାଶୟ
ସେହିଁରେ ମୁଁ କରେ ଗର୍ଭ ଉଦୟ ।
ସେହିଠାରୁ ନିଶ୍ଚିତ, ହେ ଭାରତ,
ସବୁ ପ୍ରାଣୀଏ ହୁଅନ୍ତି ସମ୍ଭୂତ । ॥ ୩ ॥

କୌନ୍ତେୟ, ଜାଣ ମୂର୍ତ୍ତିମନ୍ତ ଯେତେ
ଜନମ ଲଭନ୍ତି ଜୀବ ଜଗତେ .
ମହଦ୍ ବ୍ରହ୍ମ ସବୁର ଗର୍ଭାଶୟ
ମୁଁ ବୀଜଦାତା ପିତା ନିଃସଂଶୟ । ॥ ୪ ॥

ପ୍ରକୃତିରୁ ସମ୍ଭୂତ ତିନି ଗୁଣ
ସତ୍ତ୍ୱ, ରଜ ଆବର ତମ ଶୁଣ ।
ହେ ମହାବାହୁ, ଏ ଶରୀରେ ରୁଦ୍ଧ
ଅବ୍ୟୟ ଆତ୍ମାକୁ ରଖନ୍ତି ବାନ୍ଧି । ॥ ୫ ॥

ତହିଁ ସଦ୍‌ଗୁଣ ହେବାରୁ ନିର୍ମଳ
ଯା ହୁଏ ନିରାମୟ ଓ ଉଜ୍ଜ୍ୱଳ ।
ଦେଇ ସୁଖର ଜ୍ଞାନର ସମ୍ବନ୍ଧ
ହେ ଅନଘ, କରୁଥାଏ ଆବଦ୍ଧ । ॥ ୬ ॥

ଯାହା ତୃଷ୍ଣା ଆସକ୍ତିର କାରଣ
ସେ ଅନୁରାଗ ରଜୋଗୁଣ ଜାଣ ।
ତା ହିଁ କର୍ମଫଳ ଆସକ୍ତି ଫାନ୍ଦ
ଜୀବାତ୍ମାକୁ, କୌନ୍ତେୟ, ରଖେ ବାନ୍ଧ । ॥ ୭ ॥

ସବୁ ଜୀବଙ୍କୁ ଯେ କରେ ମୋହିତ
ସେ ତମୋଗୁଣ ଅଜ୍ଞାନରୁ ଜାତ ।
ପ୍ରମାଦ, ଆଳସ୍ୟ ଓ ନିଦ୍ରା ଫାନ୍ଦେ
ହେ ଭାରତ, ସେ ତମୋଗୁଣ ବାନ୍ଧେ । ॥ ୮ ॥

ସୁଖରେ ଜଡ଼ାଏ ତ ସତ୍ତ୍ୱଗୁଣ,
ରଜୋଗୁଣ କର୍ମେ ଖଟାଏ ପୁଣ,
ମାତ୍ର ତମୋଗୁଣଟି, ହେ ଭାରତ,
ଜ୍ଞାନ ଢାଙ୍କି କରେ ପ୍ରମାଦେ ରତ । ॥ ୯ ॥

ରଜେ, ତମେ ହଟାଇ ସତ୍ତ୍ୱଗୁଣ
ସତ୍ତ୍ୱେ, ତମେ ହଟାଇ ରଜ ପୁଣ
ସତ୍ତ୍ୱେ, ରଜେ ହଟାଇ ତମ ସତ
ନିଜକୁ ଉଦିତ କରେ, ଭାରତ । ॥ ୧୦ ॥

ଏ ଶରୀରେ ସରବ ଦ୍ୱାର ବାଟେ
ଯେତେବେଳେ ଏବା ଜ୍ଞାନ ପ୍ରକଟେ,
ସେତେବେଳେ ଜଣା ପଡ଼ଇ ପୁଣ
ବଢ଼ୁଛି ଲଭିଅଛି ସତ୍ତ୍ୱଗୁଣ । ॥ ୧୧ ॥

ଲୋଭ, କର୍ମ ସମ୍ପାଦନେ ଉଦ୍ୟମ,
ପ୍ରବୃତ୍ତି, ସ୍ପୃହା ଆବର ଅଶମ
ରଜୋଗୁଣ ବଢ଼ିଲେ ଏ ସରବ
ଜାତ ହୋଇଥାଏ, ଭରତର୍ଷଭ । ॥ ୧୨ ॥

ପ୍ରବୃତ୍ତିହୀନତା, ପ୍ରମାଦ ତଥା
ଅନ୍ଧକାର, ମୋହ ଏ ସବୁ କଥା
କୁରୁନନ୍ଦନ, ଜନ୍ମନ୍ତି ଏମାନ
ତମୋଗୁଣର ହେଲେ ବର୍ଦ୍ଧମାନ । ॥ ୧୩ ॥

ବଢ଼ିଥିବା ବେଳରେ ସତ୍ତ୍ୱଗୁଣ
ଦେହବନ୍ତର ହୋଇଲେ ମରଣ
ସେହିଜନ ଉତ୍ତମ ଜ୍ଞାନୀଙ୍କର
ନିର୍ମଳ ଲୋକ ଲଭନ୍ତି ନିକର । ॥ ୧୪ ॥

ରଜୋଗୁଣ ବେଳେ ମରଣ ହେଲେ
କର୍ମବନ୍ଧଙ୍କ ମଧ୍ୟେ ଜନ୍ମେ ହେଲେ
ତଥା ମଲେ ତମୋଗୁଣ ସମୟେ
ମୂଢ଼ ଯୋନିରେ ଜନମେ ନିଶ୍ଚୟେ । ॥ ୧୫ ॥

କହନ୍ତି ଉତ୍ତମ କର୍ମର ଫଳ
ନିଶ୍ଚିତ ସାତ୍ତ୍ୱିକ ତଥା ନିର୍ମଳ ।
ରାଜସ କର୍ମଫଳ ଦୁଃଖମାନ
ତାମସର ଫଳ ନିଜ ଅଜ୍ଞାନ । ॥ ୧୬ ॥

ସତ୍ତ୍ୱଗୁଣରୁ ହିଁ ଜ୍ଞାନ ସମ୍ଭବେ,
ରଜୋଗୁଣୁ ଲୋଭ ହିଁ ଜନ୍ମ ଲଭେ,
ତମୋଗୁଣରୁ ଜାତ ହୁଏ ଜାଣ
ପ୍ରମାଦ, ମୋହ ଆବର ଅଜ୍ଞାନ । ॥ ୧୭ ॥

ସତ୍ତ୍ୱସ୍ଥଙ୍କର ହୁଏ ଊର୍ଦ୍ଧ୍ୱଗତି
ରଜୋଗୁଣୀଏ ମଧ୍ୟରେ ରହନ୍ତି
ଜଘନ୍ୟ ତମୋଗୁଣୀ ଲୋକଙ୍କର
ଅଧୋଗମନ ହୁଅଇ ନିକର । ॥ ୧୮ ॥
କର୍ତ୍ତା ରୂପେ ଗୁଣ ଭିନ୍ନ ଇତରେ
ଯେ ଜନ୍ମ ହି ଦେଖେ ନାହିଁ ସଂସାରେ
ଜାଣେ ଆବର ଗୁଣ ହୁଁ ପରାପର
ସେ ଦ୍ରଷ୍ଟା ହିଁ ଲଭେ ଭାବ ମୋହର । ॥ ୧୯ ॥
ଦେହଜନକ ଏ ଗୁଣ ତିନିଙ୍କ
ଦେହଧାରୀ ଅତିକ୍ରମିଲେ ନିଙ୍କ,
ଜନ୍ମ-ମୃତ୍ୟୁ-ଜରା-ଦୁଃଖରୁ ଝରେ
ମୁକୁଳି ଅମୃତତ୍ୱ ଲଭ କରେ । ॥ ୨୦ ॥

## ଅର୍ଜୁନ କହିଲେ :-

ଏ ତ୍ରି ଗୁଣେ ଅତିକ୍ରମିବା ଜନ
ଚିହ୍ନା ଯାନ୍ତି ଥିଲେ କି କି ଲକ୍ଷଣ ?
ହେ ପ୍ରଭୁ, କିସ ତାଙ୍କ ଆଚରଣ ?
କେମନ୍ତେ ଡେଇଁନ୍ତି ଗୁଣଗଣ ? ॥ ୨୧ ॥

## ଶ୍ରୀକୃଷ୍ଣ କହିଲେ :-

ସ୍ୱୟଂ ପ୍ରବୃତ୍ତି, ମୋହ ଓ ପ୍ରକାଶ
ହେଲେ ପ୍ରବୃତ୍ତ ଯେ ନକରେ ଦ୍ୱେଷ ।
ଯିବା ନ ଇଚ୍ଛଇ ହେଲେ ନିବୃତ୍ତ
ହେ ପାଣ୍ଡବ, ଗୁଣାତୀତ ସେହି ତ । ॥ ୨୨ ॥
ଯେ ଉଦାସୀନ ସମ ଥାଏ ପୁଣି
ଯାକୁ ଆନ୍ଦୋଳିତ ନ କରେ ଗୁଣି,
ଗୁଣକ୍ରିୟା ଏ ବୁଝି ଅଚଳିତ
ଯେ ରୁହେଁଟି ଗୁଣାତୀତ ସେହି ତ । ॥ ୨୩ ॥

ଦୁଃଖସୁଖ, ଢେଲା-ଶିଳା-କାଞ୍ଚନ
ପ୍ରିୟ ଅପ୍ରିୟ ଓ ସ୍ତୁତି-ନିନ୍ଦନ
ଯେ ସମାନ, ମଣେ ଯେ ସୁସ୍ଥ ଧୀର
ଗୁଣାତୀତ ବୋଲିଏ ସେହି ନର । ॥ ୨୪ ॥

ଯେ ଯେତେ ତୁଲ୍ୟ ମାନ-ଅପମାନ
ଅରି-ମିତ୍ର ଯାହାଠାରେ ସମାନ
ଯେ ସର୍ବ କର୍ମେ ଉଦ୍ୟୋଗ ରହିତ
ବୋଲିଏ ଟି ଗୁଣାତୀତ ସେହି ତ । ॥ ୨୫ ॥

ଏକାନ୍ତ ଭାବେ ଭକ୍ତିସହକାରେ
ମୋତେ ହିଁ ଯେଉଁ ଜନ ସେବା କରେ,
ଏ ତ୍ରିଗୁଣେ ଅତିକ୍ରମି ସେଜନ
ବ୍ରହ୍ମତ୍ୱଲାଭକୁ ହୁଏ ଭାଜନ । ॥ ୨୬ ॥

ଯେଣୁ କରି କେବଳ ମୁଁ ଟି ନକର
ଅବ୍ୟୟ ଅମୃତ ସେ ବ୍ରହ୍ମଙ୍କର
ଆଉ ବି ଶାଶ୍ୱତ ଧର୍ମର ଆଉ
ନିରୋଳ ସୁଖର ମୂଳ ଆଧାର । ॥ ୨୭ ॥



# ପଞ୍ଚଦଶ ଅଧ୍ୟାୟ (୧)

## ( ପୁରୁଷୋତ୍ତମ ଯୋଗ )

**ଶ୍ରୀକୃଷ୍ଣ କହିଲେ :-**

ଊର୍ଦ୍ଧ୍ୱ 'ମା' ମୂଳ, ଡାଳ ଯାର ତଳ,
ଆଉ ପତ୍ର ମାର ଛାନ୍ଦ ସକଳ ।
ଅକ୍ଷୟ ଅଶ୍ୱତ୍ଥ ବୋଲନ୍ତି ତାକୁ ,
ସେ ବେଦବେତ୍ତା ଯେ ଜାଣେ ଏହାକୁ । ॥ ୧ ॥

ଅଧଃଊର୍ଦ୍ଧ୍ୱେ, ଗୁଣପୁଷ୍ଟ ଯା' ଡାଳ
ବ୍ୟାପ୍ତ, ଯା' ପଲ୍ଲବ ବିଷୟଜାଳ,
ତା ମୂଳ କର୍ମବନ୍ଧନ କାରକ
ଭେଦନ୍ତି ଅଧୋମୁଖେ ମର୍ତ୍ତ୍ୟଲୋକ । ॥ ୧ ॥

ଇହଲୋକେ ଏହାର ଆଦିଅନ୍ତ
ରୂପ-ସ୍ଥିତି ଜ୍ଞାତ ନୁହେଁ ନିତାନ୍ତ
ସେ ଦୃଢ଼ମୂଳ ଅଶ୍ୱତ୍ଥ ବୃକ୍ଷରେ
ଅସଙ୍ଗ ଶସ୍ତ୍ର ଧରି ଛେଦ କରେ । ॥ ୩ ॥

ତହୁଁ ଖୋଜିବ ସେହି ପଦକୁ ହିଁ
ଯା ମିଳନ୍ତେ କେହି ଲେଉଟେ ନାହିଁ ।
ପ୍ରାଚୀନ ପ୍ରବୃତ୍ତି ଯାଠୁଁ ଜନମ
ସେ ଆଦ୍ୟ ପୁରୁଷ ଶରଣ୍ୟ ମମ । ॥ ୪ ॥

ମାନ ମୋହ ହୀନ ଆସକ୍ତିଚ୍ୟୁତ
ନିତ୍ୟ ଆଧ୍ୟାତ୍ମିକ, କାମ ରହିତ,
ସୁଖ ଦୁଃଖ ଦ୍ୱନ୍ଦ୍ୱମୁକ୍ତ ଅମୂଢ଼
ସେ ଅବ୍ୟୟ ପଦ ଲଭନ୍ତି ଦୃଢ଼େ । ॥ ୫ ॥

ଉଦ୍ଭାସିତ ଯାକୁ ନ କରେ ରବି
ଆଉ ଶଶାଙ୍କ, ବୈଶ୍ୱାନର ବି ।
ଯହିଁକି ଗଲେ କେହି ନ ଲେଉଟେ
ତାହା ହିଁ ମୋ ପରମଧାମ ଅଟେ । ॥ ୬ ॥

ମୋର ସନାତନ ଅଂଶ ନିଶ୍ଚିତ
ଜୀବଲୋକରେ ହୋଇ ଜୀବଭୂତ
ପ୍ରକୃତିରେ ରହି ମନ ସମେତ
ଛଅ ଇନ୍ଦ୍ରିୟେ କରେ ଆକର୍ଷିତ । ॥ ୭ ॥

ଈଶ୍ୱର ଯେବେ ଶରୀର ପାଆନ୍ତି,
ଅବା ଶରୀରୁ ବାହାର ଯାଆନ୍ତି
ପଦାର୍ଥରୁ ଗନ୍ଧ ବାୟୁ ନେବା ପରି
ସେ ଚଳନ୍ତି ଛଅ ଇନ୍ଦ୍ରିୟ ଧରି । ॥ ୮ ॥

ନାକ, ଜିଭ, ଚମ, ଆଖି ଓ କାନ
ତଥା ମନଠି କରି ଅଧିଷ୍ଠାନ
ଏହି ଜୀବଟି ବିଷୟ ନିଚୟ
ଉପଭୋଗ କରୁଥାଏ ନିଶ୍ଚୟ । ॥ ୯ ॥

ଯେ ଦେହ ତେଜି ଦେହାନ୍ତରେ ଯାନ୍ତି
ଯେ ଦେହେଥାନ୍ତି, ଯେ ଭୋଗ କରନ୍ତି
ମୂଢ଼େ ତାଙ୍କୁ ନପାରନ୍ତି ଦେଖି
ସେ ଦେଖେ ଯାର ଥାଏ ଜ୍ଞାନ ଆଖି । ॥ ୧୦ ॥

ଯୋଗୀ ଦେଖନ୍ତି ହୋଇ ଯତ୍ନବାନ
ଏହାଙ୍କର ଆତ୍ମାରେ ଅବସ୍ଥାନ ।
ଅଶୁଦ୍ଧାତ୍ମା ଅଚେତୁଆ ସକଳେ
ନ ଦେଖନ୍ତି ଯେତେ ବି ଯତ୍ନ କଲେ । ॥ ୧୧ ॥

ଯେଉଁ ତେଜ ହୋଇ ଆଦିତ୍ୟଗତ
ଉଜ୍ଜଳ କରେ ଅଖିଳ ଜଗତ
ଚନ୍ଦ୍ରରେ ଅଗ୍ନିରେ ଥାଏ ଯେ ତେଜ
ସେହି ତେଜଟି ମୋର ବୋଲି ହେଜ । ॥ ୧୨ ॥

ପୃଥିବୀରେ ବ୍ୟାପି ମୁଁ ଓଜଃ ବଳେ
ଧାରଣ କରେଟି ପ୍ରାଣୀ ସକଳେ
ରସାତ୍ମକ ସୁଧାଂଶୁ ହୋଇ ପୁଣ
ସବୁ ଓଷଧୀଙ୍କୁ କରେ ପୋଷଣ । ॥ ୧୩ ॥

ମୁଁ ହିଁ ପ୍ରାଣ ଅପାନ ବାୟୁ ଧରି
ପ୍ରାଣୀଙ୍କ ଦେହକୁ ଆଶ୍ରୟ କରି
ଜଠରାଗ୍ନି ବୈଶ୍ୱାନର ରୂପରେ
ଚତୁର୍ବିଧ ଖାଦ୍ୟକୁ ପାକ କରେ । ॥ ୧୪ ॥

ଜ୍ଞାନ, ସ୍ମୃତି, ଜ୍ଞାନ ହାନି, ବିସ୍ମୃତି,
ଜନ୍ମାଏ ସର୍ବ ହୃଦେ କରି ସ୍ଥିତି ।
ମୁଁ ହିଁ ବେଦଦ୍ୱାରା ବେଦ୍ୟ ସର୍ବଥା,
ମୁଁ ବେଦାନ୍ତ କର୍ତ୍ତା, ବେଦଜ୍ଞ ତଥା । ॥ ୧୫ ॥

ଲୋକେ ଏକ କ୍ଷର ଅକ୍ଷର ଆନ
ଏହି ଦୁଇ ପୁରୁଷ ବିଦ୍ୟମାନ ।
ସର୍ବବିଧ ଭୂତ କ୍ଷର, ଆଉରି
କୂଟସ୍ଥ ବୋଲାଏ ନିତ୍ୟ ଅକ୍ଷର । ॥ ୧୬ ॥

ଏଥୁଁ ଭିନ୍ନ ଯେ ଉତ୍ତମ ପୁରୁଷ
ଯେ ଈଶ୍ୱର ଯାର ନାହିଁ ବିନାଶ
ସେ ତ୍ରିଲୋକେ ବ୍ୟାପି ପରିପାଳନ୍ତି
ତାଙ୍କୁ ପରମାତ୍ମା ବୋଲି ବୋଲନ୍ତି । ॥ ୧୭ ॥

ମୁଁ ଯେଣୁ କ୍ଷରରୁ ଭିନ୍ନ ପ୍ରକଟେ
ପୁଣି ଅକ୍ଷରହୁଁ ଉତ୍ତମ ଅଟେ ।
ତେଣୁ ମୁଁ ଲୋକରେ ବେଦରେ ତଥା
ପୁରୁଷୋତ୍ତମ ବୋଲାଏ ସର୍ବଥା । ॥ ୧୮ ॥

ମୋତେ ଜାଣନ୍ତି ଯେଉଁ ମୋହହୀନେ
ପୁରୁଷ ଉତ୍ତମ ବୋଲି ଏସନେ,
ହେ ଭାରତ, ସେହି ସର୍ବଜ୍ଞ ନରେ
ଉପାସନ୍ତି ମୋତେ ସର୍ବ ଭାବରେ । ॥ ୧୯ ॥

ଗୁହ୍ୟତମ ଏ ଶାସ୍ତ୍ର ଏ ପ୍ରକାର
ହେ ଅନଘ, ମୁଁ କରିଲି ପ୍ରଚାର ।
ବୁଦ୍ଧିମନ୍ତ କୃତକୃତ୍ୟ ଆବର
ହେବ, ଭାରତ, ଏହା ଜାଣି ନର । ॥ ୨୦ ॥



# ଷୋଡ଼ଶ ଅଧ୍ୟାୟ (୧-୪)

## ( ଦୈବାସୁର ସଂପଦ୍ ବିଭାଗ ଯୋଗ )

**ଶ୍ରୀକୃଷ୍ଣ କହିଲେ :-**

ସଂଶୁଦ୍ଧ ହୃଦୟ, ଭୟ ହୀନତା,
ଜ୍ଞାନରେ ଯୋଗରେ ଦୃଢ଼ତା ତଥା,
ଦାନ ଆବର ଦମ, ଯଜ୍ଞ ପୁଣ
ସ୍ୱାଧ୍ୟାୟ, ତପ ଓ ସରଳ ପଣ । ॥ ୧ ॥

ଅହିଂସା, ସତ୍ୟ, ଅକ୍ରୋଧିତା ପୁଣ
ତ୍ୟାଗ, ଶାନ୍ତି ଓ ଅଖଳ ଆପଣ,
ଜୀବରେ ଦୟା, ନିର୍ଲୋଭ ସ୍ୱଭାବ,
ମୃଦୁତା, ଲଜ୍ଜା, ଅଚପଳ ଭାବ । ॥ ୨ ॥

ତେଜସ୍ୱିତା, କ୍ଷମା, ଧୈର୍ଯ୍ୟ, ଶୁଚିତା,
ଅଦ୍ରୋହ ତଥା ଅନତିମାନିତା
ଏତେ ଗୁଣ ଲଭନ୍ତି ହେ ଭାରତ,
ଯେ ବା ଦୈବୀ ସମ୍ପଦ ନେଇ ଜାତ । ॥ ୩ ॥

ଦମ୍ଭ, ଦର୍ପ, ଅଭିମାନିତା ପୁଣ
କ୍ରୋଧ, ନିଷ୍ଠୁରତା ଏସବୁ ଗୁଣ
ପାର୍ଥ, ଆସୁରୀ ସମ୍ପଦ ସହିତ
ଜନ୍ମିବା ଜନର ହୁଏ ବିହିତ । ॥ ୪ ॥

ଦୈବୀ ସଂପଦ ବିମୁକ୍ତି ନିମିତ୍ତ
ଆସୁରୀ ବନ୍ଧନ ପାଇଁ ବିହିତ ।
ଦୈବୀ ସଂପଦବନ୍ତ ତୁମ୍ଭେ ସିନା
ଚିନ୍ତି, ପାଣ୍ଡବ, ନକର ଶୋଚନା ।  ॥ ୫ ॥

ହେ ପାର୍ଥ, ଏ ଲୋକେ ଦୈବ ଆସୁର
ଏମନ୍ତେ ପ୍ରାଣୀସୃଷ୍ଟି ଦି ପ୍ରକାର ।
ଦୈବେ କୁହାଗଲା ତ ସବିସ୍ତାର
ଏବେ ଶୁଣ ବଖାଣୁଛୁ ଆସୁର ।  ॥ ୬ ॥

ପ୍ରବୃତ୍ତି-ନିବୃତ୍ତି-ବିବେକ କାହିଁ
ଆସୁର ନରଠାରେ ଥାଏ ନାହିଁ ।
ଶୌଚ ନ ଥାଏ ଶୁଚି କି ଆଚାର
ନ ଥାଏ ବିଦ୍ୟମାନ ସତ୍ୟ ଆଉ ।  ॥ ୭ ॥

ସେମାନେ ବୋଲନ୍ତି : ଏହି ଜଗତ
ଅସତ୍ୟ, ପୁଂସ୍ତ୍ରୀ ମିଳନ ସମ୍ଭୂତ ।
କାମଜ, ଅପ୍ରତିଷ୍ଠ, ଅନୀଶ୍ୱର
ଆନ କି ହେତୁ ଅଛି ବା ଏହାର ।  ॥ ୮ ॥

ଏହିନ ଦୃଷ୍ଟି କରି ଆଦର ତ
ଏ ବୁଦ୍ଧିହୀନ, ଉଗ୍ର କର୍ମରତ,
ଜଗତର ଅଛି ନଷ୍ଟାତ୍ମାଗ୍ରାମ
ଜଗତନାଶାର୍ଥ ହୁଅନ୍ତି ଜାତ ।  ॥ ୯ ॥

ଅପୂରଣୀୟ କାମେ ଆଶ୍ରା କରି,
ମୋହ ହେତୁ ଭ୍ରାନ୍ତସିଦ୍ଧାନ୍ତ ଧରି
ହେବାରୁ ଦମ୍ଭ ଗର୍ବ ମଦାନ୍ମୁକ୍ତ
ରହନ୍ତି ଅଶୁଚି କର୍ମେ ନିଯୁକ୍ତ ।  ॥ ୧୦ ॥

ଆମରଣସ୍ଥାୟୀ ଅପରିମେୟ
ଚିନ୍ତାକୁ କରନ୍ତ କରି ଆଶ୍ରୟ
କାମୋପଭୋଗକୁ ଶ୍ରେଷ୍ଠ ବିଚାରି
ତା ହିଁ ସାର ବୋଲି ବିଚାର କରି । ॥ ୧୧ ॥

ଆବଦ୍ଧ ହୋଇ ଶତଆଶା ପାଶେ
କାମ କ୍ରୋଧ ବଶୀ ହେବା ସକାଶେ
କାମୋପଭୋଗ ଅର୍ଥେ ଅନ୍ୟାୟରେ
ଲାଗି ପଡ଼ନ୍ତି ଅର୍ଥ ସଂଚୟରେ । ॥ ୧୨ ॥

ଏତିକ ଆଜି ମୁଁ ଲଭିଛି ତଥା
ପରେ ଲଭିବି ଏ ଇପ୍‌ସିତ କଥା,
ଏ ଧର୍ମ ମୋର, ଏ ଧନ ଆବର
ଭବିଷ୍ୟତକୁ ହୋଇଯିବ ମୋର । ॥ ୧୩ ॥

ମୁଁ ବଧିଛି ମୋର ସେହି ଅରିକି
ପୁଣି ଅନ୍ୟଙ୍କୁ ବି ବଧିବି ନିଶ୍ଚି,
ମୁଁ ଐଶ୍ୱର୍ଯ୍ୟଶାଳୀ, ଆଉ ମୁଁ ଭୋଗୀ
ମୁଁ ସିଦ୍ଧ, ବଳବନ୍ତ, ସୁଖ ଭାଗୀ । ॥ ୧୪ ।

ମୁଁ ଉଚ୍ଚକୁଳଜାତ, ଧନବାନ,
କିଏ ବା ଆଉ ଅଛି ମୋ ସମାନ,
ଯଜ୍ଞ ଦାନ କରି ହେବି ମୋଦିତ
ମଣନ୍ତି ଅଜ୍ଞାନେ ହୋଇ ମୋହିତ । ॥ ୧୫ ॥

ବହୁ ଚିନ୍ତେ ବିଚଳିତ ଚିତ୍ତ
ଆଉର ମୋହ ଜାଲେ ସମାବୃତ
କାମୋପଭୋଗେ ଆସକ୍ତ ଲୋକେ
ପଡ଼ନ୍ତି ଅପବିତ୍ର ନରକେ । ॥ ୧୬ ॥

ଅଧ୍ୟାୟ-୧୬ (୧୭-୨୨)

ଯେ ବା ଆପଣାକୁ ମଣେ ମହନ୍ତ
ଅବା ଧନ-ମାନ-ଗର୍ବୀ ଉଦ୍ଧତ
ଅହଂକାରେ ଅବିଧିରେ ସେ ଜନ
ନାମମାତ୍ର ଯଜ୍ଞେ କରେ ପୂଜନ । ॥ ୧୭ ॥

ଏମନ୍ତ ଅସୂୟାବନ୍ତ ଜନ ସେ
ଅପର ଦ୍ୱାରା ତଥା ନିଜେ ନିଜେ
ଅହଂକାର-ବଳ-ଦର୍ପ-କ୍ରୋଧରେ
ମୋ ପ୍ରତି ନିଜ ଦ୍ୱେଷଭାବ ଧରେ । ॥ ୧୮ ॥

ନରାଧମ, କ୍ରୂର ଓ ତଦ୍ୱେଷାଗ୍ରସ୍ତ
ସେହି ମନ୍ଦଜନଙ୍କୁ ମୁଁ ବତ୍ସ
ସଂସାରେ ଆସୁରୀ ଗର୍ଭେ କେବଳ
ନିକ୍ଷେପ କରୁଥାଏ ଚିରକାଳ । ॥ ୧୯ ॥

ଆସୁରୀଗର୍ଭଜ ମୂଢ ସରବେ
ଜନ୍ମୁ ଜନ୍ମୁ ମୋତେ ନ ଲଭି ଭବେ
ହେ କୌନ୍ତେୟ, କେବଳ ଅଧୋଗତି
ତହୁଁ ଅଧିକୁ ଅଧିକ ଲଭନ୍ତି । ॥ ୨୦ ॥

କାମ, କ୍ରୋଧ ସହିତ ଲୋଭ ଆଉ
ଏ ତିନି ନରକର ଦୁଆର
ଏ ତିନ ଆତ୍ମାର ନାଶକ ନିଜ
ତେଣୁ ଜନ ଛାଡ଼ିବ ଏ ତିନଙ୍କ । ॥ ୨୧ ॥

କୌନ୍ତେୟ, ତିନି ଏ ତମୋଦ୍ୱାରେ
ଯେଉଁ ନରଟି ଅତିକ୍ରମି ପାରେ
ସେ ନିଷ୍ଠେ ଆପଣା ଶ୍ରେୟ ଆଚରେ,
ପରେ ପରମଗତି ଲଭ କରେ । ॥ ୨୨ ॥

ଶାସ୍ତ୍ର ବିଧାନ ଏଡ଼ି ଯେଉଁ ଜନ
ଚଳେ କାମନାର ହୋଇ ଅଧୀନ
ସିଦ୍ଧି ସେ ନ ଲଭେ, ସୁଖ ନ ଲଭେ,
ପରମ ଗତି ବି ନ ଲଭେ କେବେଁ । ॥ ୨୩ ॥
ସ୍ୱୀୟ କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଣ୍ଣୟ
ବିଷୟେ ଶାସ୍ତ୍ର ପ୍ରମାଣ ନିଶ୍ଚୟ
ହେଣୁ ବୁଝି ଶାସ୍ତ୍ରୋକ୍ତବିଧି ମର୍ମ
ଇହ ଲୋକେ ତୁମ୍ଭେ କରିବ କର୍ମ । ॥ ୨୪ ॥



# ସପ୍ତଦଶ ଅଧ୍ୟାୟ (୧-୩)

## ( ଶ୍ରଦ୍ଧାତ୍ରୟ ବିଭାଗ ଯୋଗ )

**ଅର୍ଜୁନ କହିଲେ :-**

ଯେଉଁ ଜନେ ଏଡ଼ି ଶାସ୍ତ୍ରବିଧାନ
ଶ୍ରଦ୍ଧା ସହ କରନ୍ତି ଯଜ୍ଞମାନ,
ହେ କୃଷ୍ଣ, ତାଙ୍କ ନିଷ୍ଠା ଅଟେ କିସ
ସାତ୍ତ୍ୱିକ ନା ରାଜସ ନା ତାମସ ? ॥ ୧ ॥

**ଶ୍ରୀକୃଷ୍ଣ କହିଲେ :-**

ସମସ୍ତ ଦେହଧାରୀମାନଙ୍କର
ସ୍ୱଭାବ ଜାତ ସେ ଶ୍ରଦ୍ଧା ନିକର,
ସାତ୍ତ୍ୱିକ, ରାଜସ, ତାମସ ପୁଣ
ଏପରି ତ୍ରିବିଧ ହିଁ ହୁଏ, ଶୁଣ । ॥ ୨ ॥
ସ୍ୱସତ୍ତ୍ୱାନୁରୂପ ସଭିଁର ଶ୍ରଦ୍ଧା
ଏହି ପୁରୁଷ ଶ୍ରଦ୍ଧାମୟ ସଦା
ଶ୍ରଦ୍ଧା ଯେପରି ହୁଏ ଯାହାର ତ
ସେହିପରି ହିଁ ସେ ହୁଏ ଭାରତ । ॥ ୩ ॥

ପୂଜୁଥାନ୍ତି ଦେବତାଙ୍କୁ ସାତ୍ତ୍ୱିକେ
ଯକ୍ଷ ଓ ରାକ୍ଷସଙ୍କୁ ରାଜସିକେ
ଏଥୁଁ ଭିନ୍ନ ଯେତେ ତାମସ ଜନ
କରନ୍ତି ଭୂତପ୍ରେତଙ୍କ ପୂଜନ । ॥ ୪ ॥

ଦମ୍ଭ ଅହଂକାର ଥିବା ଫଳରେ
କାମନା ତଥା ଆସକ୍ତି ବଳରେ
ଘୋର ତପସ୍ୟା ଶାସ୍ତ୍ରରେ ଯା ମନା
କରୁଥାନ୍ତି ଯେଉଁ ଲୋକେ ସାଧନା । ॥ ୫ ॥

ଶରୀରସ୍ଥ ସମସ୍ତ ଜଡ଼ ଭୂତେ
ତଥା ଶରୀରେ ଅନ୍ତଃସ୍ଥିତ ମୋତେ
ପୀଡ଼ନ୍ତି ଯେ ଅଚେତୁଆଳ ଜନେ
ଆସୁର ସ୍ୱଭାବନଟି ସେମାନେ । ॥ ୬ ॥

ଆଉର ସବୁଙ୍କର ପ୍ରୀତିକର
ଆହାର ହୁଏ ତ୍ରିବିଧ ନିଜର
ତ୍ରିବିଧ ତଥା ଯଜ୍ଞ ତପ ଦାନ
କହିବି ଭେଦ କର ଅବଧାନ । ॥ ୭ ॥

ଯେଉଁ ଆହାର ବଢ଼ାଏ ଶକତି
ଆୟୁ, ସତ୍ତ୍ୱ, ସ୍ୱାସ୍ଥ୍ୟ, ସୁଖ ଓ ପ୍ରୀତି
ଯାହାଟି ସ୍ନିଗ୍ଧ, ସ୍ଥାୟୀ ରସମୟ
ଆଉ ମନୋଜ୍ଞ ତା ସାତ୍ତ୍ୱିକ ପ୍ରିୟ । ॥ ୮ ॥

ଅତି ଅମ୍ଳ, ଲୁଣିଆ, ଉଷ୍ଣ, କଡ଼ା
ତୀକ୍ଷ୍ଣ, ଦାହଜନକ, ଖଡ଼ ଖଡ଼ା
ସେପରି ଆହାର ରାଜସ ଚାହେଁ
ଯା ଦୁଃଖ-ଶୋକ-ରୋଗ ଉପୁଜାଏ । ॥ ୯ ॥

ପହରରେ ଆଗୁଁ ଯା ରନ୍ଧା ହେଲାଣି,
ଯା ନୀରସ, ଗନ୍ଧିଆ, ବାସୀ ପୁଣି,
ଯାହା ଅଇଁଠା, ଅପବିତ୍ର ଆଉ
ତାମସପ୍ରିୟ ତେମନ୍ତ ଆହାର । ॥ ୧୦ ॥

ଫଳ ଆକାଂକ୍ଷା ନ ପୋଷିବା ଜନେ
ଯଜ୍ଞ କର୍ତ୍ତବ୍ୟ ବୋଲି ଧରି ମନେ
ଯାହା କରନ୍ତି ଶାସ୍ତ୍ର ଅନୁଯାୟୀ
ସେପରି ଯଜ୍ଞ ସାତ୍ତ୍ୱିକ ବୋଲାଇ । ॥ ୧୧ ॥

ଅଥଚ ଫଳାକାଂକ୍ଷା ପୋଷି ମନେ
ଆଉ ବି ଦାମ୍ଭିକତା ପ୍ରଦର୍ଶନେ
ଅନୁଷ୍ଠିତ ହୁଏ ଯେ ଯଜ୍ଞମାନ,
ଭରତ ଶ୍ରେଷ୍ଠ ତା ରାଜସ ଜାଣ । ॥ ୧୨ ॥

ବିଧି ହୀନ, ଅନ୍ନଦାନ ବର୍ଜିତ,
ମନ୍ତ୍ର ବିହୀନ, ଶ୍ରଦ୍ଧାବିରହିତ,
ଦକ୍ଷିଣା ଦିଆ ହୁଏ ନାହିଁ ଯହିଁ
ତେମନ୍ତ ଯଜ୍ଞକୁ ତାମସ କହି । ॥ ୧୩ ॥

ଦେବ-ଦ୍ୱିଜ-ଗୁରୁ-ପ୍ରାଜ୍ଞ ପୂଜନ
ଶଉଚ, ସରଳତା ଆଚରଣ
ବ୍ରହ୍ମଚର୍ଯ୍ୟ ଓ ଅହିଂସା ଏହି ତ
ଶାରୀରିକ ତପ ବୋଲି ବିଦିତ । ॥ ୧୪ ॥

ଉଦ୍‌ବେଗକାରକ ନୁହେଁ ଯା ତଥା
ଯା ସତ୍ୟ, ପ୍ରିୟ, ହିତକର କଥା
ବେଦାଧ୍ୟୟନ ଅଭ୍ୟାସ ନିୟତ
ବାଙ୍‌ମୟ ତପ ନାମେ ଅଭିହିତ । ॥ ୧୫ ॥

ସୌମ୍ୟଭାବ, ମନର ପ୍ରସନ୍ନତା,
ମୌନତ୍ୱ ଓ ଆତ୍ମସଂଯମ ତଥା
ଆବର ଅମାୟିକ ବ୍ୟବହାର
ମାନସ ତପ ନାମ ଜାଣ ତାର । ॥ ୧୬ ॥

ଫଳାଭିଳାଷ ନ ପୋଷି ମନରେ
ପୂର୍ଣ୍ଣ ଶ୍ରଦ୍ଧାରେ ଯୋଗଯୁକ୍ତ ନରେ
କରନ୍ତି ଯେ ତପ ତିନି ପ୍ରକାର
ତାହା ସାତ୍ତ୍ୱିକ ବୋଲଏ ନିକର । ॥ ୧୭ ॥

ସତ୍କାର-ମାନ-ପୂଜା ଲାଭ ପାଇଁ
ଇହଲୋକେ ଦାମ୍ଭିପଣ ଦେଖାଇ
ଚଳ ଅଧ୍ରୁବ ତପ ଯା କରନ୍ତି
ତାକୁହିଁ ରାଜସ ବୋଲି ବୋଲନ୍ତି । ॥ ୧୮ ॥

ମୂଢ଼ପଣେ ହଠାଇ ଆତ୍ମପୀଡ଼ା
ଅବା ପରର କ୍ଷତି କରି ଲୋଡ଼ା ।
କରାଯାଏ ଯେ ତପ ଅନୁଷ୍ଠାନ
ତାମସ ସେ ତପର ଅଭିଧାନ । ॥ ୧୯ ॥

ଅନୁପକାରୀ ଓ ଦାନଭାଜନେ
'ଦେବା ଉଚିତ ହେବ' ଭାବି ମନେ
ଦେଲେ ଦେଶକାଳ ବିବେଚନାରେ
ସେ ଦାନ ବିଦିତ ସାତ୍ତ୍ୱିକ ନାଁରେ । ॥ ୨୦ ॥

ଅଥଚ ପ୍ରତ୍ୟୁପକାର ସକାଶେ
ଅଥବା ତୁ ଫଳ ମିଳିବା ଆଶେ
ଦେବା କୁଣ୍ଠାଇ କରି ଯା ଦିଅନ୍ତି
ତାକୁ ରାଜସ ବୋଲିଟି ବୋଲନ୍ତି । ॥ ୨୧ ॥

ଅନୁପଯୁକ୍ତ ଦେଶକାଳେ ଜାଣ
ଅସତ୍କାରେ କି କରି ଅବଜ୍ଞାନ
ଅପାତ୍ରକୁ ଦିଆ ହୁଏ ଯେ ଦାନ
ତାହାରିଟି ତାମସ ଅଭିଧାନ । ॥ ୨୨ ॥

ବ୍ରହ୍ମଙ୍କ ଓମ୍ ତତ୍ ସତ୍ ଏ ନାମ ତ୍ରୟ
ତାର ଉଚ୍ଚାରଣ ଦ୍ୱାରା ନିଶ୍ଚୟ,
ବ୍ରାହ୍ମଣେ, ବେଦେ ଓ ଯଜ୍ଞ ଯେତେ
ସୃଷ୍ଟି ହୋଇଛନ୍ତି ଜାଣ ଅତୀତେ । ॥ ୨୩ ॥

ତେଣୁ ସତତ ବ୍ରହ୍ମବାଦୀଗଣ
ଓଁକାର ନାଦ କରି ଉଚ୍ଚାରଣ
ଅବଲମ୍ବି ଶାସ୍ତ୍ରେ ଉକ୍ତ ବିଧାନେ
ପ୍ରବର୍ତ୍ତିନ୍ତି ତପେ, ଯଜ୍ଞେ ଓ ଦାନେ । ॥ ୨୪ ॥

ଉଚ୍ଚାରି ତତ୍ ମୋକ୍ଷାନ୍ୱେଷୀ ସର୍ବେ
ଫଳ ଅଭିଳାଷ ନ ପୋଷି ଲବେ
ଯଜ୍ଞ ସପାଦି ତପ ଆଚରନ୍ତି
ତଥା ନାନାବିଧ ଦାନ କରନ୍ତି । ॥ ୨୫ ॥

ସତ୍ ଶବଦର ଏକ ଅର୍ଥ ସତ୍ତା
ଅନ୍ୟ ଏକ ଅର୍ଥ ତାର ସାଧୁତା
ଆଉ ବି ତ ସତ୍ ଶବ୍ଦ ବେଳେବେଳେ
ପ୍ରଶସ୍ତ କର୍ମ ଅର୍ଥରେ ପ୍ରଚଳେ । ॥ ୨୬ ॥

ତତ୍ପରତା ଯଜ୍ଞ-ତପ-ଦାନରେ
ତାକୁ ସତ୍ ବୋଲି ବୋଲୁଥାନ୍ତି ନରେ
ତଦୁଦ୍ଦେଶ୍ୟରେ ଯା ଯା କର୍ମମାନ
ତାହାର ମଧ୍ୟ ସତ୍ ହିଁ ଅଭିଧାନ । ॥ ୨୭ ॥

ଶ୍ରଦ୍ଧା ବିନା ତପ, ହୋମ ଓ ଦାନ
କଲେ, ପାର୍ଥ, ତା ଅସତ୍ ବୋଲି ଜାଣ
ସେ ତପ, ହୋମ ବା ଦାନକରଣ
ଇହ ପରଲୋକେ ନୋହେ କାରଣ । ॥ ୨୮ ॥



# ଅଷ୍ଟାଦଶ ଅଧ୍ୟାୟ (୧-୩)

## (ମୋକ୍ଷ ସଂନ୍ୟାସଯୋଗ)

**ଅର୍ଜୁନ କହିଲେ :-**

ହୃଷୀକେଶ, ସନ୍ନ୍ୟାସତତ୍ତ୍ୱ କଥା,
ହେ ମହାବାହୁ, ତ୍ୟାଗତତ୍ତ୍ୱ ତଥା
ବେଦାନ୍ତ କରି ଜାଣିବାକୁ ମନ
ମୋର କରୁଛି, କେଶିନିସୂଦନ । ॥ ୧ ॥

**ଶ୍ରୀକୃଷ୍ଣ କହିଲେ :-**

ବିଚକ୍ଷଣ ସୁଧୀ ମତେ ପ୍ରକାଶ
ସକାମକର୍ମ ତ୍ୟାଗ ହିଁ ସନ୍ନ୍ୟାସ ।
ସର୍ବ କର୍ମଫଳ ତ୍ୟାଗକୁ ପୁଣି
ସେ ପଣ୍ଡିତେ ତ୍ୟାଗ ବୋଲି ବଖାଣି । ॥ ୨ ॥

କେତେ ପଣ୍ଡିତେ ଦେଇଥାନ୍ତି ମତ
ଦୋଷ ପରି ପରିତ୍ୟାଜ୍ୟ କର୍ମ ତ ।
ଯଜ୍ଞ, ଦାନ ଓ ତପ କର୍ମ ଯେତେ
ତ୍ୟାଜ୍ୟ ନୁହେଁ ବୋଲନ୍ତି ଆଉ କେତେ । ॥ ୩ ॥

ସେ ତ୍ୟାଗ ବିଷୟେ ଅବଧାରଣ
ଭରତସତ୍ତମ, କର ଶ୍ରବଣ ।
ପୁରୁଷ ବ୍ୟାଘ୍ର, ବୋଲନ୍ତି ଜ୍ଞାନୀ
ସେହି ତ୍ୟାଗଟି ତିନ ପ୍ରକାରର । ॥ ୪ ॥

ଯଜ୍ଞ, ଦାନ ଓ ତପ ନୁହେଁ ତ୍ୟାଜ୍ୟ
ସେ ସମସ୍ତ କର୍ମ ନିଶ୍ଚୟ କାର୍ଯ୍ୟ ।
ଯଜ୍ଞ, ଦାନ, ତପ କଲେ ଅବଶ୍ୟ
ପୂତ ହୁଅନ୍ତି ମନସ୍ୱୀ ମନୁଷ୍ୟ । ॥ ୫ ॥

କିନ୍ତୁ ଆସକ୍ତି ଫଳାକାଂକ୍ଷା ତଥା
ଛାଡ଼ି ଏ ସବୁ କର୍ତ୍ତବ୍ୟ ସର୍ବଥା,
ଏହା ହିଁ ମୋ ସ୍ଥିର ସିଦ୍ଧାନ୍ତ ଆଉ,
ହେ ପାର୍ଥ, ଏ ମୋର ଶ୍ରେଷ୍ଠ ବିଚାର । ॥ ୬ ॥

ମାତ୍ର ଯେଉଁ ସବୁ କର୍ମ ବିହିତ
ତାର ପରିତ୍ୟାଗ ନୁହେଁ ଉଚିତ ।
ତାକୁ ତେଜିଲେ ହୋଇ ମୋହବଶ
ସେ ତ୍ୟାଗ ଜାଣ ବୋଲାଏ ତାମସ । ॥ ୭ ॥

ଏ କର୍ମ ଦୁଃଖ ହିଁ ବୋଲି ବିଚାର
କାୟକ୍ଳେଶକୁ ଭୟ ବା କରି କର
କର୍ମ ତେଜଇ ତା କର୍ମ ରାଜସ
ତ୍ୟାଗଫଳ ସେ ନ ଲଭେ ତ ଲେଶ । ॥ ୮ ॥

ଆସକ୍ତି ଫଳାକାଂକ୍ଷା ତ୍ୟାଗ କରି
ଏହା ତ କର୍ତ୍ତବ୍ୟ ବୋଲି ବିଚାରି
ବିହିତ କର୍ମ କଲେ, ହେ ଅର୍ଜୁନ,
ସେ ତ୍ୟାଗ ସାତ୍ତ୍ୱିକ ବୋଲାଏ, ଶୁଣ । ॥ ୯ ॥

ମେଧାବୀ ସତ୍ତ୍ୱବନ୍ତ ତ୍ୟାଗୀଜନ
ନିଃସନ୍ଦିଗ୍ଧ ହେବାରୁ ତାଙ୍କ ମନ
ଅକୁଶଳ କର୍ମେ ନ ନିନ୍ଦନ୍ତି ତ
କୁଶଳ କର୍ମେ ନୁହନ୍ତି ଜଡ଼ିତ । ॥ ୧୦ ॥

ଦେହବନ୍ତେ ସମ୍ପୂର୍ଣ୍ଣ ରୂପେ କାହିଁ
କର୍ମକୁ ଛାଡ଼ି ପାରନ୍ତି ଟି ନାହିଁ ।
କିନ୍ତୁ ଯେ ତ୍ୟାଗ କରେ କର୍ମଫଳ
ତ୍ୟାଗୀ ପଦବାଚ୍ୟ ସେହି କେବଳ । ॥ ୧୧ ॥

ଅତ୍ୟାଗୀଙ୍କ କର୍ମଫଳ ପ୍ରକର
ପରଲୋକରେ ନିଶ୍ଚୟ ନିକର
ଅନିଷ୍ଟ, ଇଷ୍ଟ, ମିଶ୍ର ରୂପ ହୁଏ
ମାତ୍ର, ତ୍ୟାଗୀଙ୍କ ତା କଦାପି ନୁହେଁ । ॥ ୧୨ ॥

ସାଂଖ୍ୟ ସିଦ୍ଧାନ୍ତେ କୁହାଯିବା ମତେ
ସକଳ କର୍ମର ସିଦ୍ଧି ନିମନ୍ତେ
ମହାବାହୁ, ଅଛି ପାଞ୍ଚ କାରଣ
ମୁଁ କହୁଛି, ତା କର ଶ୍ରବଣ । ॥ ୧୩ ॥

ଏକ ସ୍ଥାନ, ଦୁଇ କର୍ତ୍ତା କାରଣ,
ତୃତୀୟ କାରଣ ନାନା ସାଧନ,
ଚତୁର୍ଥ ବିବିଧ ଚେଷ୍ଟାପ୍ରକର
ପଞ୍ଚମ କାରଣ ଦୈବ ନିକର । ॥ ୧୪ ॥

ହେଉ ନ୍ୟାଯ୍ୟ ବା ତା ହେଉ ଅନ୍ୟଥା
ନର କାୟ-ବାକ୍ୟ-ମନେ ସର୍ବଥା
ଆରମ୍ଭ କରେ ଯେ ଯେ କର୍ମମାନ
ଏ ପାଞ୍ଚ ହିଁ ତାର କାରଣ ଜାଣ । ॥ ୧୫ ॥

ଏମନ୍ତ ଅବସ୍ଥାରେ ଯେଉଁ ଜନେ
ବୁଦ୍ଧି ଅପକ୍ୱ ଥିବାର କାରଣେ
ନିଜକୁ କର୍ତ୍ତା ରୂପରେ ଦେଖନ୍ତି
ସେ ମୂଢ଼େ ଠିକେ ଦେଖି ନ ପାରନ୍ତି । ॥ ୧୬ ॥

ନାହିଁ ଯାର 'ମୁଁ କରିଛି' ବିଚାର
ବାହିରେ ଲିପ୍ତ ନୁହେଁ ବୁଦ୍ଧି ଯାର
ବଧି ବି ଲୋକେ ସେ ବଧ ନକରେ
ପଡ଼େ ନାହିଁ ସେ କର୍ମ ବନ୍ଧନରେ । ॥ ୧୭ ॥

କର୍ମ ପ୍ରେରଣାଟି ତିନ ପ୍ରକାର
ଜ୍ଞାନ, ଜ୍ଞେୟ ସହିତ ଜ୍ଞାତା ଆର ।
କର୍ମ ସମୁଦାୟ ତଥା ତ ତିନ,
କରଣ, କର୍ମ ଓ କର୍ତ୍ତା ଯେନ । ॥ ୧୮ ॥

ଗୁଣ ଭେଦେ ଯଥା-ଗୁଣ ବିବେକ,
ଜ୍ଞାନ କର୍ମ ଓ କର୍ତ୍ତା ତିନଯାକ
ତିନ ତିନ ପ୍ରକାର ହୁଏ ପୁଣ
ସେ କଥା ଏବେ ଯଥାବିଧି ଶୁଣ । ॥ ୧୯ ॥

ନାନାବିଧ ରୂପୀ ଭୂତ ଭିତରେ
ଏକ ଅଭିନ୍ନ ଅବ୍ୟୟ ଭାବରେ
ଯେଉଁ ଜ୍ଞାନ ବଳେ ଦେଖଇ ନର
ସେ ଜ୍ଞାନ ସାତ୍ତ୍ୱିକଜ୍ଞାନ ନିକର । ॥ ୨୦ ॥

ମାତ୍ର ଯେ ଜ୍ଞାନ ସର୍ବଭୂତକାୟେ
ବିବିଧ ବହୁଭାବ ସମବାୟେ
ଅସବନ୍ଧ କରି କରାଏ ଦୃଶ୍ୟ
ଯେନ, ସେ ଜ୍ଞାନ ରାଜସ ଅବଶ୍ୟ । ॥ ୨୧ ॥

ଜନ୍ତୁ, ଯେଉଁ ଜ୍ଞାନ କୌଣସି କଥା
ତା ସମଗ୍ର ହେବା ଭଳି ଅନ୍ୟଥା
ଆସକ୍ତ ରଖେ ସେ ତତ୍ତ୍ୱାର୍ଥହୀନ
ଓ ତୁଚ୍ଛ ଜ୍ଞାନ ଟି ତାମସ ଘେନ । ॥ ୨୨ ॥

କଲେ ଫଳାକାଂକ୍ଷାଶୂନ୍ୟ ମଣିଷ
ମନେ ନ ପୋଷି ପ୍ରୀତି ଅବା ଦ୍ୱେଷ
ବିହିତ କର୍ମ ଆସକ୍ତି ରହିତ
ସେ କର୍ମଟିକୁ ସାତ୍ତ୍ୱିକ କହନ୍ତି । ॥ ୨୩ ॥

କଲେ କରମ ମନେ ରଖି ଛମ
ଆର ବହ୍ୱାୟାସସାଧ୍ୟ କରମ,
କାମବାଞ୍ଛୀ ଯା କରେ ସଂପାଦନ
ତା, ଜନ୍ତୁ, ରାଜସ ନାମେ ବିଦିତ । ॥ ୨୪ ॥

କ୍ଷତି, ହିଂସା ସାମର୍ଥ୍ୟ, ପରିଣତି,
ନ ବିଚାରି ହେବାରୁ ମୂଢମତି,
ନର ଆରମ୍ଭ କରେ ଯେଉଁ କାମ
ତାର ହୁଅଇଟି ତାମସ ନାମ । ॥ ୨୫ ॥

ଯେ ଆସକ୍ତିହୀନ, ନିରହଂକାର,
ଧୈର୍ଯ୍ୟ ଓ ଉତ୍ସାହ ଥାଏ ଯାହାର
ଯେ ସିଦ୍ଧି ବିଘ୍ନରେ ନିର୍ବିକାର
ସାତ୍ତ୍ୱିକ ନାମ ନିଜ ସେ କର୍ତ୍ତାର । ॥ ୨୬ ॥

ପ୍ରୀତିଜଡ଼ିତ, କର୍ମଫଳେଚ୍ଛୁକ
ଲୋଭଗ୍ରସ୍ତ, ଶୁଚିହୀନ, ହିଂସ୍ରକ
ହର୍ଷେ ଉଲ୍ଲସିତ, ଶୋକେ ବ୍ୟଥିତ
ଯେମନ୍ତ କର୍ତ୍ତା ରାଜସ କଥିତ । ॥ ୨୭ ॥

ଅଯୁକ୍ତ, ଅଭଦ୍ର, ଜିଦିଆ, ଠକ
ନେଖାଢରଆ, ସମୟକ୍ଷେପକ,
ବିଷାଦସ୍ୱଭାବ, ଚିର ଅଳସ
ଯେମନ୍ତ କର୍ତ୍ତା ବୋଲିଏ ତାମସ । ॥ ୨୮ ॥

ବୁଦ୍ଧିର ଆବର ଧୃତିର ତଥା
ଗୁଣତଃ ତ୍ରିବିଧ ପ୍ରଭେଦ କଥା
ମ ନିଶେଷ ଭିନ୍ନ ଭିନ୍ନ ରୂପରେ,
ଧନଞ୍ଜୟ, ଶୁଣ, କହିବି ପରେ । ॥ ୨୯ ॥

କାର୍ଯ୍ୟ ଅକାର୍ଯ୍ୟ, ପ୍ରବୃତ୍ତି ନିବୃତ୍ତି,
ଭୟ ଅଭୟ, ବନ୍ଧନ ମୁକତି
ଏ ଭେଦ ପାର୍ଥ, ଚିହ୍ନେ ଯେଉଁ ବୁଦ୍ଧି
ତା ନାମ ସାତ୍ତ୍ୱିକ ବୋଲି ପ୍ରସିଦ୍ଧି । ॥ ୩୦ ॥

ହେ ପାର୍ଥ, ଯେଉଁ ବୁଦ୍ଧିବଳେ ତଥା
ଧର୍ମାଧର୍ମ ଓ କାର୍ଯ୍ୟାକାର୍ଯ୍ୟ କଥା
ଅଯଥାର୍ଥ ଭାବେ ହିଁ ହୁଏ ଜାଣି
ସେ ବୁଦ୍ଧି ଟିକି ରାଜସ ବଖାଣି । ॥ ୩୧ ॥

ଯେଉଁ ବୁଦ୍ଧି ତମସାଚ୍ଛନ୍ନ ହୋଇ
ଅଧର୍ମକୁ ଧର୍ମ ବୋଲି ବୁଝଇ
ଓଲଟ ମଣଇ ସବୁ ବିଷୟ
ହେ ପାର୍ଥ, ତାହା ତାମସ ନିଶ୍ଚୟ । ॥ ୩୨ ॥

ଏକନିଷ୍ଠ ଯୋଗସାଧନ ଫଳେ
ମନ ପ୍ରାଣେନ୍ଦ୍ରିୟ କ୍ରିୟା ସକଳେ
ଯେଉଁ ଧୃତି କରିପାରେ ଧାରଣ
ସେ ଧୃତିର ନାମ ସାତ୍ତ୍ୱିକ ଜାଣ । ॥ ୩୩ ॥

ମାତ୍ର, ଯେଉଁ ଧୃତି ଫଳାଭିଳାଷେ
ହେ ଅର୍ଜୁନ, ଆସକ୍ତିର ସକାଶେ,
ଧର୍ମ, କାମ ଓ ଅର୍ଥକୁ ଧରଇ,
ପାର୍ଥ, ସେ ଧୃତିକି ରାଜସ କହି । ॥ ୩୪ ॥

ପାର୍ଥ, ଯାହା ଯୋଗୁଁ ଦୁର୍ବୁଦ୍ଧି ଲୋକ
ନିଦ୍ରା, ଭୟ, ଅହଂକାର ଓ ଶୋକ
ପରିହାର କରି ନ ପାରେ ନିଜ
ତାମସ ବୋଲନ୍ତି ସେହି ଧୃତିକି । ॥ ୩୫ ॥

ଭରତର୍ଷଭ, ତ୍ରିବିଧ ସୁଖର
ବର୍ଣ୍ଣନ ଇଦାନୀଂ ଶ୍ରବଣ କର
ଯହିଁ ଅଭ୍ୟାସତଃ ରମନ୍ତି ଲୋକେ
ମାତ୍ର ଶେଷେ ପଡ଼ନ୍ତି ଦୁଃଖଶୋକେ । ॥ ୩୬ ॥

ପହିଲୁ ଯାହା ଲଗେ ବିଷ ସମ
ପରିଣାମେ ହୁଏ ଅମୃତୋପମ
ବିମଳ ଆତ୍ମବୁଦ୍ଧିରୁ ଉତ୍ପନ୍ନିତ
ସେ ସୁଖ ସାତ୍ତ୍ୱିକ ବୋଲି କଥିତ । ॥ ୩୭ ॥

ବିଷୟ-ଇନ୍ଦ୍ରିୟ ସଂଯୋଗ ଯୋଗେ
ପହିଲେ ଯା ଅମୃତୋପମ ଲଗେ
ପରିଣାମେ କିନ୍ତୁ ଯା ବିଷବତ
ସେ ସୁଖ ରାଜସ ବୋଲି ବିଦିତ । ॥ ୩୮ ॥

ଆରମ୍ଭ ବେଳେ ପରିଣାମେ ଆଉ
ଯେଉଁ ସୁଖ ମୋହକର ଆତ୍ମାର
ନିଦ୍ରା-ଆଳସ୍ୟ-ପ୍ରମାଦ ଜନିତ
ସେ ସୁଖ ତାମସ ନାମେ ନାମିତ । ॥ ୩୯ ॥

ଅଧ୍ୟାୟ-୧୮ (୪୦-୪୫)

ଏମନ୍ତ ସତ୍ତ୍ୱ ନାହିଁ ଭୂତଳରେ
ଅବା ସ୍ୱର୍ଗରେ ଦେବଙ୍କ ମେଳରେ
ଯାହା ଏହି ପ୍ରକୃତିରୁ ସମ୍ଭୂତ
ହେବା ତ୍ରିବିଧ ଗୁଣରୁ ମୁକତ । ॥ ୪୦ ॥

ବ୍ରାହ୍ମଣର, କ୍ଷତ୍ରିୟର, ବୈଶ୍ୟର
ଓ, ପରନ୍ତପ, ଶୂଦ୍ର ମନୁଷ୍ୟର
କର୍ମ ସକଳ ବଣ୍ଟା ହୋଇ ଥାଇ
ସ୍ୱଭାବଜାତ ଗୁଣ ଅନୁଯାୟୀ । ॥ ୪୧ ॥

ଚିତ୍ତପ୍ରଶାନ୍ତି, ଇନ୍ଦ୍ରିୟ ନିଗ୍ରହ,
ତପ, ଶୌଚ, କ୍ଷମା, ଋଜୁତା ସହ
ଆସ୍ତିକତା ପୁଣି ଜ୍ଞାନ ବିଜ୍ଞାନ
ସ୍ୱଭାବଜ ବ୍ରହ୍ମକର୍ମ ଏମାନ । ॥ ୪୨ ॥

ତେଜସ୍ୱିତା, ଦକ୍ଷତା ଆଉ ଶୌର୍ଯ୍ୟ,
ଯୁଦ୍ଧେ ହିଁଷା ଅପଲାୟନ, ଧୈର୍ଯ୍ୟ,
ଅଧୀଶ୍ୱରପଣ ଆଉର ଦାନ
ସ୍ୱଭାବଜ କ୍ଷାତ୍ରଧର୍ମ ଏମାନ । ॥ ୪୩ ॥

କୃଷି, ପଶୁପାଳନ ଓ ବଣିଜ
ଏ ସବୁ କର୍ମ ବୈଶ୍ୟ ସ୍ୱଭାବଜ ।
ପରିଚର୍ଯ୍ୟା ମୂଳକ କର୍ମଚୟ
ତା ଶୂଦ୍ରର ସ୍ୱଭାବଜ ନିଶ୍ଚୟ । ॥ ୪୪ ॥

ନିମୁକ୍ତ ରହିଲେ ନିଜ କର୍ମରେ
ନର ସଂସିଦ୍ଧି ନିଶ୍ଚ ଲାଭ କରେ ।
ସ୍ୱକର୍ମ ନିରତ ନରଟି ପୁଣ
ଯେମନ୍ତେ ସିଦ୍ଧି ଲଭେ, ତାହା ଶୁଣ । ॥ ୪୫ ॥

ଯାହାଙ୍କଠୁ ସର୍ବଭୂତ ସମ୍ଭୂତ
ଯେ ବ୍ୟାପ୍ତ ଅଖିଳଜଗତଗତ
ସ୍ୱକର୍ମେ କରି ତାହାଙ୍କ ପୂଜନ
ସିଦ୍ଧିକୁ ଲଭିଥାଏ ସିନା ଜନ । ॥ ୪୬ ॥

ସୁସମ୍ପାଦିତ ପରଧର୍ମ ଠାରୁଁ
ଗୁଣହୀନ ସ୍ୱଧର୍ମ ଶ୍ରେୟ ଯହୁଁ
ସ୍ୱଭାବ ନିୟତ କର୍ମ ଯେ କରେ
ସେ ହୁଏ ନାହିଁ ପାପଭାଗୀ ପରେ । ॥ ୪୭ ॥

ସହଜ କର୍ମ ହେଲେହେଁ ଦୂଷିତ
କୌନ୍ତେୟ, ତା ତେଜିବା ଅନୁଚିତ ।
ନିଆଁକୁ ଧୂଆଁ ପରି ଯେଣ୍ଟି ଦୋଷ
ସର୍ବାରମ୍ଭକୁ ଆଚ୍ଛାଦେ ବିଶେଷ । ॥ ୪୮ ॥

ବୁଦ୍ଧି ସର୍ବତ୍ର ଅନାସକ୍ତ ଯାର,
ଯେ ଆତ୍ମଜୟୀ, ଯେ ନିଃସ୍ପୃହ ଆଉ
କର୍ମ ମୁକ୍ତି ରୂପ ଶ୍ରେଷ୍ଠ ସିଦ୍ଧିକି
ସନ୍ନ୍ୟାସ ଦ୍ୱାରା ସେ ଲଭଇ ନିଜ । ॥ ୪୯ ॥

ବ୍ରହ୍ମ ସେ ପରମ ଲକ୍ଷ୍ୟ ଜ୍ଞାନର
ତା ଯଥା ଲଭେ ସିଦ୍ଧିମନ୍ତ ନର,
କୌନ୍ତେୟ, ତା ସିଦ୍ଧେ ଯେମନ୍ତ ପୁଣ
ସଂକ୍ଷେପରେ ବଖାଣିବି ତା, ଶୁଣ । ॥ ୫୦ ॥

ବିଶୁଦ୍ଧ ବୁଦ୍ଧି ଯୁକ୍ତ ହୋଇ ପୁଣି
ଧୃତିରେ ସାଧି ଆତ୍ମ ନିୟନ୍ତ୍ରଣ,
ଶବ୍ଦ ଆଦି ବିଷୟଚୟ ତେଜି
ପ୍ରୀତି ତଥା ବିଦ୍ୱେଷକୁ ବରଜି । ॥ ୫୧ ॥

ନିକାଞ୍ଚନ-ନିବାସକୁ ଆଦରି
ହୋଇ ଧ୍ୟାନମୁକ୍ତ, ଅଳ୍ପଆହାରୀ
କାୟ-ବାକ୍ୟ-ମନେ ରହି ସଂଯତ
ହୋଇ ବିଶେଷେ ବୈରାଗ୍ୟ ଆଶ୍ରିତ । ॥ ୫୨ ॥

ସ୍ୱ ବଳ, ଦର୍ପ, କାମ, ଅହଂକାର,
କ୍ରୋଧ, ପରିଗ୍ରହ ତେଜି ଆବର
ବୀତମମତ୍ୱ, ଶାନ୍ତ ହୋଇ ଜନ
ବ୍ରହ୍ମତ୍ୱଲାଭକୁ ହୁଏ ଭାଜନ । ॥ ୫୩ ॥

ପ୍ରସନ୍ନାତ୍ମା ଲଭି ବ୍ରହ୍ମତ୍ୱ କାହିଁ
ଶୋଚନା କି ଆକାଂକ୍ଷା ରଖେ ନାହିଁ ।
ସର୍ବ ଭୂତେ ଧରି ସମଭାବ
ମୋର ପରମ ଭକ୍ତି କରେ ଲାଭ । ॥ ୫୪ ॥

ଭକ୍ତିରୁ ମୁଁ ଅଟେ ଯାହା ଯେମନ୍ତ
ଭକ୍ତରେ ଜାଣନ୍ତି ତାର ତଦନ୍ତ
ତତ୍ତ୍ୱତଃ ମୋତେ ଜାଣି ପରେ ପରେ
ପ୍ରବେଶ କରେ ସେ ମୋର ମଧ୍ୟରେ । ॥ ୫୫ ॥

ସକଳ କର୍ମ କଲେ ହେଁ ସତତ
ମୋଠାରେ ମାତ୍ର ନେଲେ ଆଶ୍ରୟତ
ମୋ ଅନୁଗ୍ରହୁ ସେ ଶାଶ୍ୱତ ତଥା
ଅବିନାଶୀ ସ୍ଥିତି ଲଭେ ସର୍ବଥା । ॥ ୫୬ ॥

ଚିତ୍ତେ ଅର୍ପି ମୋତେ ସବୁ କରମ
ପୁଣି, ମାନି ମୁଁ ହିଁ ଅଟେ ପରମ,
ବୁଦ୍ଧିଯୋଗଯୁକ୍ତ ହୋଇ ନିରତ
ମୋର ଠାରେ ହୁଅ ନିବିଷ୍ଟଚିତ୍ତ । ॥ ୫୭ ॥

ଅଧ୍ୟାୟ-୧୮ (୫୮-୬୩)

ମୋ ପ୍ରସାଦେ ମୋଠି ଚିତ୍ତ ରଖି
ସର୍ବ ଦୁର୍ଗତି ତରିବ ନିଶ୍ଚିତ ।
ଯେବେ ବା ହୋଇ ଅହଂକାରବଶ
ମୋତେ ନ ଶୁଣିବ, ହେବ ବିନଷ୍ଟ । ॥ ୫୮ ॥

ତୁମ୍ଭେ ଅହଂକାରର ଆଶ୍ରା ନେଇ
ଭାବିବ ଯଦି ମୁଁ ଯୁଝିବି ନାହିଁ ।
ଏ ତୁମ୍ଭ ଅଭିପ୍ରାୟ ବୃଥା ଯିବ
ସ୍ୱଭାବ ତୁମ୍ଭଙ୍କୁ ଖଟାଇବ ନା । ॥ ୫୯ ॥

ସ୍ୱୀୟ ସ୍ୱଭାବଜ କର୍ମେ, କୌନ୍ତେୟ,
ହୋଇଥିବାରୁ ଆବଦ୍ଧ ନିଶ୍ଚୟ
ଯା, କରିବା ନ ଇଚ୍ଛ ମୋହବଶେ
ତା' ହିଁ ଅନାୟତ୍ତେ କରିବ ଶେଷେ । ॥ ୬୦ ॥

ଈଶ୍ୱର ସ୍ୱୀୟ ମାୟାଶକ୍ତି ବଳେ
ଯନ୍ତ୍ରାରୂଢ଼ କରି ପ୍ରାଣୀ ସକଳେ,
ଅର୍ଜୁନ, ସଭିଙ୍କୁ ଭ୍ରମାଇ ଜାଣ
ହୃଦନ୍ତରେ ଥାନ୍ତି ବିରାଜମାନ । ॥ ୬୧ ॥

ଭାରତ, ଶରଣ ସର୍ବ ପ୍ରକାରେ
ନିଅ କେବଳ ତାଙ୍କ ପଦତଳରେ
ତାଙ୍କ ଅନୁଗ୍ରହରୁ ଲଭି ପାର
ଶାନ୍ତିସାର, ଶାଶ୍ୱତ ସ୍ଥିତି ଆର । ॥ ୬୨ ॥

ଗୁହ୍ୟ ମଧ୍ୟେ ଏ ଅତିଗୁହ୍ୟ ଜ୍ଞାନ
ତୁମ୍ଭ ସମକ୍ଷରେ କଲି ବ୍ୟାଖ୍ୟାନ ।
ଏହାକୁ ସମ୍ପୂର୍ଣ୍ଣେ କରି ବିଚାର
ଚେଷ୍ଟିକି ଯା ଇଚ୍ଛା ତାହା ଆଚର । ॥ ୬୩ ॥

ଗୁହ୍ୟତମ ଏହି ବଚନ ସାର
ଭଲେ ଶୁଣ କହୁଛି ପୁନର୍ବାର ।
ତୁମ୍ଭେ ମୋର ପରମ ପ୍ରିୟ ଜାଣି
ତେଣୁ କହିବି ତୁମ୍ଭ ହିତବାଣୀ । ॥ ୬୪ ॥

ହୁଅ ମୋ ଭକ୍ତ, ଥୁଅ ମୋଠି ମନ
ମୋତେ ଜୁହାର, କର ମୋ ଯଜନ,
ତୁମ୍ଭେ ଯେଣୁ ମୋ ପ୍ରିୟ, ସତ୍ୟପଥ
କହୁଛି ମୋତେ ହିଁ ଲଭିବ ସତ । ॥ ୬୫ ॥

ସମସ୍ତ ଧର୍ମ ପରିତ୍ୟାଗ କରି,
ଆଦରି ଶରଣ ଏକା ମୋହରି
ଶୋକ ନ କର, ମୁଁ ନିଶ୍ଚେ ତୁମ୍ଭଙ୍କୁ
ମୁକୁଳାଇବି ସକଳ ପାତକୁ । ॥ ୬୬ ॥

ତପସ୍ୟାବର୍ଜିତେ, ଭକ୍ତିବିହୀନେ,
ଏହା ଶୁଣିବାକୁ ବିମୁଖ ଜନେ,
ଆଉ ବି ମୋ ନିନ୍ଦୁକ ଯେତେ ଥିବେ
ତାଙ୍କୁ ଏହାକୁ ନ କହିବ କେବେ । ॥ ୬୭ ॥

ଯେ ବା ଶ୍ରେଷ୍ଠଭକ୍ତି ରଖି ମୋ ପ୍ରତି
ଏ ପରମଗୁହ୍ୟ ରହସ୍ୟତତ
ମୋର ଭକ୍ତମାନଙ୍କୁ ବତାଇବେ
ନିଃସନ୍ଦେହେ ସେ ମୋତେ ହିଁ ପାଇବେ । ॥ ୬୮ ॥

ମନୁଷ୍ୟ ମଧ୍ୟରେ ତାହାଙ୍କ ତହୁଁ
ମୋ ପ୍ରିୟକର ନାହାନ୍ତି ତ କେହୁ ।
ଜଗତେ ମୋ ପ୍ରିୟକର ଅପର
କେହି ନାହାନ୍ତି, ନ ହେବେ ଆବର । ॥ ୬୯ ॥

ଯେ ବା ଏ ଧର୍ମାଳାପକୁ ଆମ୍ଭର
ଅଧ୍ୟୟନ କରୁଥିବେ ଆଦର
ଜ୍ଞାନଯଜ୍ଞରେ ସେ, ମୋର ମତରେ,
ମୋତେ ପୂଜା କରୁଥିବେ ସତରେ । ॥ ୭୦ ॥

ଆଉ ବି ଯେଉଁ ଶ୍ରଦ୍ଧାବନ୍ତ ତଥା
ଅନସୂୟୁ ନର ଶୁଣେ ଏ କଥା
ନିଶ୍ଚେ ମୁକତ ହୋଇ ସେହି ଲୋକ
ଲଭେ ପୁଣ୍ୟକର୍ମୀଙ୍କ ଶୁଭଲୋକ । ॥ ୭୧ ॥

ହେ ପାର୍ଥ, ଖଟାଇ ଏକାଗ୍ରମନ
ତୁମ୍ଭେ ଏମାନ କଲ ତ ଶ୍ରବଣ ?
ତୁମ୍ଭ ଅଜ୍ଞାନଜ ସମ୍ମୋହଚୟ
ବିନଷ୍ଟ ହେଲ ତ, ହେ ଧନଞ୍ଜୟ ? ॥ ୭୨ ॥

## ଅର୍ଜୁନ କହିଲେ :-

ତବ ପ୍ରସାଦ ବଶତଃ, ଅଚ୍ୟୁତ,
ମୋ ସର୍ବ ସମ୍ମୋହ ହେଲା ବିଚ୍ୟୁତ ।
ଲଭିଲି ଜ୍ଞାନ, ହେଲି ନିଃସନ୍ଦେହ,
ପାଳିବି ତବ ବଚନ ସନ୍ଦୋହ । ॥ ୭୩ ॥

## ସଂଜୟ କହିଲେ :-

ମହାତ୍ମା ବାସୁଦେବ ପାର୍ଥଙ୍କର
ମଧୁର ଏମନ୍ତ ରୋମାଞ୍ଚକର
ତଥା ଅଦ୍ଭୁତ କଥାବାର୍ତ୍ତା ମାନ
ଶ୍ରବଣ କରିଅଛି ମୋର କାନ । ॥ ୭୪ ॥

ଏହି ଶ୍ରେଷ୍ଠ ତଥା ଗୁହ୍ୟଯୋଗକୁ
ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କର ମୁଖ
ସେ ସ୍ୱୟଂ କହୁଥିବାର ଏସନେ
ସାକ୍ଷାତେ ଶୁଣିଲି ବ୍ୟାସ ପ୍ରସନ୍ନେ । ॥ ୭୫ ॥

ଏ ଆଳାପ କୃଷ୍ଣାର୍ଜୁନ ମଧ୍ୟର
ଯାହା ଅଦ୍ଭୁତ ଓ ପୁଣ୍ୟ ଆଧାର
ସ୍ମରଣ କରି କରି ମୋର ଚିତ୍ତ
ପୁନଃ ପୁନଃ ହେଉଛୁ ଉଲ୍ଲସିତ । ॥ ୭୬ ॥

ସେ ହରିଙ୍କ ଅତି ଅଦ୍ଭୁତ ରୂପ
ସ୍ମରି ବାରଂବାର ମଧ୍ୟ, ହେ ଭୂପ !
ମୋର ଜନମିଲି ମହାବିସ୍ମୟ
ପୁନଃପୁନଃ ହେଲି ହରଷମୟ । ॥ ୭୭ ॥

ଯହିଁ ଅଛନ୍ତି କୃଷ୍ଣ ଯୋଗେଶ୍ୱର
ଆଉ ଅଛନ୍ତି ପାର୍ଥ ଧନୁର୍ଦ୍ଧର
ମୋ ମତେ ତହିଁ ରହେ ଶ୍ରୀ, ବିଜୟ
ବିଭବ ଓ ସ୍ଥିରନୀତି ନିଚୟ । ॥ ୭୮ ॥



**ସମାପ୍ତ**

ଲୋକେ ଆଦରିଲେ ଏ ଭାଷାନ୍ତର
ପ୍ରଶଂସ୍ୟ ଏହା ମୂଳ ଗ୍ରନ୍ଥକାର ।
ଲୋକଙ୍କ ପସନ୍ଦ ନ ହେଲେ ମାତ୍ର
ଅନୁବାଦକ ହିଁ ନିନ୍ଦାର ପାତ୍ର ।

# ଭଗବଦ୍ ଗୀତା ପ୍ରକ୍ଷିପ୍ତ କି ?

ଭଗବଦ୍ ଗୀତା ମହାଭାରତର ଭୀଷ୍ମପର୍ବର ଏକ ଅଂଶ । ଭୀଷ୍ମ ପର୍ବର ୨୫ତମ ଅଧ୍ୟାୟରୁ ଆରମ୍ଭ କରି ୧୮ଟି ଅଧ୍ୟାୟକୁ 'ଭଗବଦ୍ ଗୀତା' କୁହାଯାଏ ।

ମହାଭାରତ ବହୁ ଥରରେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇ ଶେଷକୁ ବର୍ତ୍ତମାନର ଏକ ଲକ୍ଷ ଶ୍ଲୋକାତ୍ମକ ରୂପ ଗ୍ରହଣ କରିଛି । କେତେକ ପଣ୍ଡିତ ମତ ଦେଇଛନ୍ତି ଯେ ଏହାର ପ୍ରାଚୀନତମ ରୂପର ନାମ ଥିଲା 'ଜୟ' (ତେଣ୍ଣ ତତୋ ଜୟ ମୁଦୀରୟେତ୍) ଯାହାକି ମାତ୍ର ୮,୮୦୦ ଶ୍ଲୋକ ବିଶିଷ୍ଟ ଥିଲା । ଜୟର ପରିବର୍ଦ୍ଧିତ ରୂପ ୨୪,୦୦୦ ଶ୍ଲୋକ ବିଶିଷ୍ଟ ଭାରତ ସଂହିତା । ଶେଷରେ ଭାରତ ଆହୁରି ପରିବର୍ଦ୍ଧିତ ହୋଇ — ଏହି ପରିବର୍ଦ୍ଧନ ବିଭିନ୍ନ ସ୍ତରରେ ନାନା ଉପାଖ୍ୟାନର ସଂଯୋଗ ଦ୍ୱାରା ଘଟି — ଅନ୍ତିମ ରୂପ ପ୍ରାୟ ଖ୍ରୀ ୪୦୦ ବେଳକୁ ନେଇଛି ମହାଭାରତରେ । ମହାଭାରତର ଆଦିପର୍ବର ପ୍ରଥମ ଅଧ୍ୟାୟର ୬୧ତମ ଶ୍ଲୋକରେ ସ୍ୱୀକୃତ ହୋଇଛି ଯେ ଯେତେବେଳେ ଏହି ଗ୍ରନ୍ଥରେ ଉପାଖ୍ୟାନମାନ ନ ଥିଲା ଏହା ୨୪,୦୦୦ ଶ୍ଲୋକାତ୍ମକ ଭାରତ ସଂହିତା ବୋଲାଉଥିଲା :—

ଚତୁର୍ବିଂଶତି ସାହସ୍ରୀ ଚକ୍ରେ ଭାରତ ସଂହିତାମ୍
ଉପାଖ୍ୟାନୈ ବିନା ତାବଦ୍ ଭାରତଂ ପ୍ରୋଚ୍ୟତେ ବୁଧୈଃ ।

ମହାଭାରତର ଅଂଗୀଭୂତ ହେବା ଢଙ୍ଗରେ ପ୍ରଣୀତ ହୋଇଥିଲେ ହେଁ ଭଗବଦ୍ ଗୀତା ଗୋଟିଏ ଏକକ ସ୍ୱୟଂସମ୍ପୂର୍ଣ୍ଣ ଗ୍ରନ୍ଥ । ଏହାର ଯୋଜନା ଏପରି ଯେ ଏହାକୁ ଏକ ପୃଥକ୍ ଗ୍ରନ୍ଥ ଭାବରେ ସ୍ୱୀକାର କରିବାକୁ ହେବ । ପରଂପରାକ୍ରମେ ଏହାକୁ ପ୍ରସ୍ଥାନତ୍ରୟର ଏକତମ ଭାବରେ ଗଣନା କରାଯାଏ । ଏହା ତାହାର ପୃଥକ୍ତ୍ୱର ସୂଚକ । ଭଗବଦ୍ ଗୀତାକୁ ମହାଭାରତ ମଧ୍ୟରେ ଶେଷ ପର୍ଯ୍ୟାୟରେ ଭର୍ତ୍ତି କରାଯାଇ ନାହିଁ ବୋଲି ଜାଣିହେଉଛି, କାରଣ ମହାଭାରତର ଶାନ୍ତି ପର୍ବର ଅନ୍ତର୍ଗତ ନାରାୟଣୀୟ ଅଂଶରେ ଭଗବଦ୍ ଗୀତାରେ ବ୍ୟାଖ୍ୟାତ ଏକାନ୍ତିକ ଧର୍ମର ପରିବର୍ଦ୍ଧନ ସ୍ପଷ୍ଟତଃ ଦେଖିବାକୁ ମିଳୁଛି । ଏଥିରେ ଏକାନ୍ତିକ ଧର୍ମର ତତ୍ତ୍ୱ ପ୍ରଥମେ

ନାରାୟଣ ପିତାମହଙ୍କୁ କହିଥିବା, ପିତାମହ ଦକ୍ଷଙ୍କୁ, ଦକ୍ଷ ଆଦିତ୍ୟଙ୍କୁ, ଆଦିତ୍ୟ ବିବସ୍ୱାନଙ୍କୁ, ବିବସ୍ୱାନ୍ ମନୁଙ୍କୁ ଓ ମନୁ ଇକ୍ଷ୍ୱାକୁଙ୍କୁ କହିଥିବା କଥା ରହିଛି । ଭଗବଦ୍ ଗୀତାର ଚତୁର୍ଥ ଅଧ୍ୟାୟରେ କିନ୍ତୁ ଲେଖାଅଛି ଯେ ଏହି ଧର୍ମ ଭଗବାନ ବିବସ୍ୱାନଙ୍କୁ ପ୍ରଥମେ କହିଥିଲେ ଓ ବିବସ୍ୱାନ୍ ମନୁଙ୍କୁ, ମନୁ ଇକ୍ଷ୍ୱାକୁଙ୍କୁ କହିଥିଲେ । ନାରାୟଣୀରେ ପାଞ୍ଚରାତ୍ର ପଦ୍ଧତିର ବ୍ୟୂହ ଚତୁଷ୍ଟୟ ବିଶେଷ ପ୍ରାଧାନ୍ୟ ପାଇଛି, ଯାହା ମଧ୍ୟ ସୂଚାଉଛି ଯେ ଭଗବଦ୍ ଗୀତା ରଚନା ବେଳକୁ ପାଞ୍ଚରାତ୍ର ଭାଗବତ ଧର୍ମର ଅଭ୍ୟୁଦୟ ଘଟିନଥିଲା । ଏଣୁ, ଅନୁମିତ ହେଉଛି ଯେ ଭଗବଦ୍ ଗୀତା ମହାଭାରତର ଅଂଶୀଭୂତ ହେବା ପରେ ମଧ୍ୟ ଅନ୍ୟାନ୍ୟ ଅଂଶ ମହାଭାରତ ମଧ୍ୟକୁ ଆସି ଯାଇଛି ।

ଅନ୍ୟପକ୍ଷରେ, ଭଗବଦ୍ ଗୀତା ମୂଳରେ ମହାଭାରତର ଅଂଶ ବିଶେଷ ନ ଥିଲା ବୋଲି ଅନୁମାନ କରିବା ପାଇଁ ଅନେକ କାରଣ ରହିଛି । ତନ୍ମଧ୍ୟରୁ କେତୋଟିକୁ ଉଲ୍ଲେଖ କରଯାଇ ପାରେ :—

୧) ଭଗବଦ୍ ଗୀତାର ଯେତେ ସବୁ ପୋଥି ମିଳିଛି ସେ ସବୁର ପ୍ରତ୍ୟେକ ଅଧ୍ୟାୟ ଶେଷରେ ଥିବା ପୁଷ୍ପିକାରେ ତାହା ଭଗବଦ୍ ଗୀତାର ଅମୁକ ଅଧ୍ୟାୟ ବୋଲି ହିଁ ସୂଚନା ଦିଆଯାଇଛି । ମହାଭାରତ ପୋଥିରେ ମହାଭାରତର ଭୀଷ୍ମ ପର୍ବର ଅଧ୍ୟାୟ ସଂଖ୍ୟା ସୂଚିତ ହେଉଛି କିନ୍ତୁ ଭଗବଦ୍ ଗୀତା ପୋଥିରେ ତାହା ମହାଭାରତର ଭୀଷ୍ମ ପର୍ବର ଅମୁକ ଅଧ୍ୟାୟ ବୋଲି ସୂଚନା ରହୁନାହିଁ । କେତେକ ପୋଥିରେ ତ ତାହା ମହାଭାରତର ଅଂଶ ଥିବାର ସୂଚନା ମଧ୍ୟ ରହୁନାହିଁ (ଯଥା :- ଶିବାନନ୍ଦ ସରସ୍ୱତୀଙ୍କ ପ୍ରଣୀତ ଇଂରାଜୀ ଭଗବଦ୍ ଗୀତା) । ଭଗବଦ୍ ଗୀତା ମୂଳରୁ ମହାଭାରତ/ଭାରତର ଅଂଶ ହୋଇଥିଲେ ଅନୁଲେଖକମାନେ ଅଧ୍ୟାୟାନ୍ତ ପୁଷ୍ପିକାରେ ସେହି ବିଷୟକୁ ଉଲ୍ଲେଖ କରିବା ସ୍ୱାଭାବିକ ହୋଇଥାଆନ୍ତା ।

୨) ଅନେକ ପୁରୁଣା ମହାଭାରତ ପୋଥିରେ ଗୀତା ଅଂଶ ଆଦୌ ସ୍ଥାନ ପାଇନାହିଁ । ବେଲ୍ୱାଲକରଙ୍କ ଅଧ୍ୟୟନ କରିଥିବା କେତେକ ପୋଥି (ଯାହାକୁ ସେ K2 ଓ Da2 ଭାବରେ ଚିହ୍ନିତ କରିଛନ୍ତି ଓ ଯାହା ନିଃସନ୍ଦେହ ଭାବରେ ପ୍ରାଚୀନ ଥିବା ଦର୍ଶାଇଛନ୍ତି) ମଧ୍ୟରେ ଗୀତା ୧୮ ଅଧ୍ୟାୟ ସ୍ଥାନ ପାଇନାହିଁ । ଅନୁମାନ କରିବାକୁ ହେଉଛି ଏହି ପୋଥିଗୁଡ଼ିକ ଗୀତା ମହାଭାରତର ଅଂଶୀଭୂତ ହେବା ପୂର୍ବ ସମୟର ମହାଭାରତର ନକଲ ।

୩) ଯେଉଁ ସମୟ ଓ ପରିସ୍ଥିତି ମଧ୍ୟରେ ଗୀତା ଉପସ୍ଥାପିତ ହୋଇଥିବା କଥା କୁହାଯାଉଛି ତାହା ଗୀତା ପାଇଁ ଉପଯୁକ୍ତ ସମୟ କି ପରିସ୍ଥିତି ନୁହେଁ । ନିରବଚ୍ଛିନ୍ନ ଭାବରେ ଗୀତାର ଶ୍ଳୋକ ଗୁଡ଼ିକ ଉଚ୍ଚାରିତ ହେଲେ ଅତେଇ ଘଣ୍ଟାରୁ କମ୍ ସମୟ ଲାଗିବ ନାହିଁ । କୌରବ ଓ ପାଣ୍ଡବ ପକ୍ଷୀୟ ୧୮ ଅକ୍ଷୌହିଣୀ ସୈନ୍ୟ ରଣାଙ୍ଗନରେ ପରସ୍ପରର ମୁହାଁମୁହିଁ ହୋଇ ସାରିଛନ୍ତି । ଉଭୟ ପକ୍ଷର ମୁଖ୍ୟ ସେନାପତି ଓ ବୀର-ମାନେ ଶଙ୍ଖନାଦ ସହିତ ଯୁଦ୍ଧର ଆରମ୍ଭ ଘୋଷଣା କରି ସାରିବା ପରେ ଅର୍ଜୁନ ପ୍ରତିପକ୍ଷ ଭାବରେ ଉପସ୍ଥିତ ତାଙ୍କର ଗୁରୁଜନ ଓ ଆତ୍ମୀୟମାନଙ୍କୁ ଦେଖି ଯୁଦ୍ଧ କରିବେ ନାହିଁ ବୋଲି ଘୋଷଣା କରି ଶସ୍ତ୍ରତ୍ୟାଗ କରିଛନ୍ତି । ଏହା ପରେ କୃଷ୍ଣ ଅର୍ଜୁନଙ୍କୁ ନିମିତ୍ତମାତ୍ର ହୋଇ ଯୁଦ୍ଧ କରି ସ୍ୱଧର୍ମ ସାଧନ କରିବାକୁ ପ୍ରବର୍ତ୍ତାଇବା ମଧ୍ୟରେ ଗୀତା ଉପସ୍ଥାପିତ ହୋଇଛି । କୃଷ୍ଣ ଓ ଅର୍ଜୁନ ମଧ୍ୟରେ ଗୀତାରେ ବର୍ଣ୍ଣିତ ଧର୍ମତତ୍ତ୍ୱର ଚର୍ଚ୍ଚା ଚାଲିଥିବା ବେଳେ ଅତେଇ ଘଣ୍ଟା କାଳ କୌରବ ସେନା କଣ କାଠ ପ୍ରତିମା ପରି ଠିଆ ହୋଇ ରହିବେ ଅର୍ଜୁନ କୃଷ୍ଣଙ୍କ କଥା ମାନି ପ୍ରଥମେ ଶର ଚାଳନ କରିବେ ବୋଲି ? ମହାଭାରତର ଯୁଦ୍ଧ ପରିକଳ୍ପନା ଭିତରେ ଗୀତାର ଉପସ୍ଥାପନା ଭିତରେ ଗୀତାର ଉପସ୍ଥାପନ ସ୍ଥାନକାଳୋଚିତ ମନେ ହେଉ ନାହିଁ ।

୪) ଗୀତାର ବର୍ଣ୍ଣନା ଅନୁସାରେ ଅର୍ଜୁନ କୃଷ୍ଣଙ୍କ ବିଶ୍ୱରୂପ ଦର୍ଶନ କରି ଭୟାକୁଳ ହେଲେ ଓ ପ୍ରାର୍ଥନା କଲେ : 'ତ ଦେବ ମେ ଦର୍ଶୟ ଦେବ ରୂପଂ ପ୍ରସୀଦ' ଅର୍ଥାତ୍ "ହେ ଦେବ, ଅନୁଗ୍ରହ ପୂର୍ବକ ମୋତେ ତୁମର ସେହି ପୂର୍ବ ରୂପହିଁ ଦେଖାଅ" । ଏହି ପୂର୍ବ ରୂପର ବର୍ଣ୍ଣନା ଅର୍ଜୁନ ଏହି ପରି ଦେଇଛନ୍ତି (ଗୀତା ୧୧/୪୬) :—

କିରୀଟିନଂ ଗଦିନଂ ଚକ୍ରହସ୍ତମିଚ୍ଛାମି ତ୍ୱାଂ ଦ୍ରଷ୍ଟୁମହଂ ତଥୈବ ।<br>ତେନୈବ ରୂପେଣ ଚତୁର୍ଭୁଜେନ ସହସ୍ରବାହୋ ଭବ ବିଶ୍ୱମୂର୍ତ୍ତେ ॥

ଅର୍ଥାତ୍, ହେ ସହସ୍ରବାହୁ, ବିଶ୍ୱମୂର୍ତ୍ତି, ମୁଁ ଆପଣଙ୍କୁ କେବଳ କିରୀଟ, ଗଦା ଓ ଚକ୍ର ଧରିଥିବା ଚତୁର୍ଭୁଜ ରୂପରେ ଦେଖିବାକୁ ଇଚ୍ଛା କରୁଛି ।

ମହାଭାରତର କୃଷ୍ଣଙ୍କ ସ୍ୱାଭାବିକ ରୂପ ଗଦାଚକ୍ରଧାରୀ ଚତୁର୍ଭୁଜ ନୁହେଁ । ସେ ତାଙ୍କ ମହିମା ପ୍ରକଟ କରିବା ପାଇଁ ସମୟେ ସମୟେ ଶଙ୍ଖ ଚକ୍ର ଗଦାଧାରୀ ଚତୁର୍ଭୁଜ

ରୂପ ପ୍ରକାଶ କରୁଥିଲେ ହେଁ ତାଙ୍କର ସ୍ୱାଭାବିକ ରୂପ ଥିଲା ଦ୍ୱିଭୁଜ, ଆୟୁଧ ହୀନ । ଗୀତାର ଏହି ଶ୍ଳୋକ ଦୃଷ୍ଟେ ଅନୁମାନ କରାଯାଇ ପାରେ ଯେ ଗୀତାର ଲେଖକ ଓ ମହାଭାରତର ଲେଖକ ଭିନ୍ନ ଭିନ୍ନ ବ୍ୟକ୍ତି ।

୫) ମହାଭାରତ ଯୁଦ୍ଧର ପ୍ରଥମ ଦିବସ ଆରମ୍ଭର ବର୍ଣ୍ଣନା ଭୀଷ୍ମପର୍ବର ଆରମ୍ଭରେ ଦିଆଯାଇଛି । ଏହା ବୈଶମ୍ପାୟନ ଜନ୍ମେଜୟଙ୍କୁ କହିଥିବା ଭଳି ଦିଆଯାଇଛି । ତଦନୁସାରେ ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିର ରଣାଙ୍ଗନକୁ ଆସିଛନ୍ତି । ପାଞ୍ଚାଳମାନେ ଦୁର୍ଯ୍ୟୋଧନଙ୍କ ଆଗମନ ଦେଖି ଭେରୀ ଶଙ୍ଖ ଆଦି ବଜାଇଛନ୍ତି । କୃଷ୍ଣ ଓ ଅର୍ଜୁନ ମଧ୍ୟ ଦୁଇଟି ଶଙ୍ଖ ବଜାଇଛନ୍ତି । ଏହିସମୟରେ ରକ୍ତବୃଷ୍ଟି ହୋଇଛି, ବାତ୍ୟା ହୋଇଛି । ଯୁଦ୍ଧ ସମୟରେ ଯେଉଁ ସବୁ ବିଧି ପାଳନ କରିବାକୁ ହେବ ତାହା ଭୀଷ୍ମ ଅର୍ଜୁନଙ୍କୁ ବୁଝାଇଛନ୍ତି । ଯୁଦ୍ଧ ବିଧିକୁ ଲଂଘନ ନ କରି ଦୁଇ ସେନା ଯୁଦ୍ଧ କରିବାକୁ ଅଗ୍ରସର ହୋଇଥିବା ବର୍ଣ୍ଣନା ମଧ୍ୟ ଭୀଷ୍ମ ପର୍ବ ଆରମ୍ଭରେ ରହିଛି ।

ଏହା ପରେ ବ୍ୟାସ ସଞ୍ଜୟଙ୍କୁ ଦିବ୍ୟଚକ୍ଷୁ ଦେଇଥିବା ଓ ଦିବ୍ୟଚକ୍ଷୁ ଦ୍ୱାରା ସଞ୍ଜୟ ଦେଇଥିବା ଯୁଦ୍ଧର ବର୍ଣ୍ଣନା ସେ ଧୃତରାଷ୍ଟ୍ରଙ୍କ ଆଗରେ ପ୍ରକାଶ କରିଥିବା କଥା ରହିଛି । ସଞ୍ଜୟଙ୍କ ବର୍ଣ୍ଣନାରେ ଅର୍ଜୁନ ତାଙ୍କ ରଥକୁ ରଣାଙ୍ଗନର ମଧ୍ୟ ଭାଗକୁ ନେବା ଲାଗି କୃଷ୍ଣଙ୍କୁ କହିଥିବା ଓ ଯୁଦ୍ଧ କରିବାକୁ ଅନିଚ୍ଛୁକ ହୋଇଥିବା ବର୍ଣ୍ଣନା ରହିଛି (ଏହା ଗୀତାର ପ୍ରଥମ ଅଧ୍ୟାୟ, ଭୀଷ୍ମପର୍ବର ୨୫ ଅଧ୍ୟାୟ) । ଯୁଦ୍ଧ ଆରମ୍ଭର ବର୍ଣ୍ଣନା ବୈଶମ୍ପାୟନଙ୍କ ମୁଖରେ ଯେପରି ପ୍ରକାଶିତ ହୋଇଥିଲା ସଞ୍ଜୟ ସେପରି ବର୍ଣ୍ଣନା ଦେଇନାହାନ୍ତି । ଭୀଷ୍ମ ଅର୍ଜୁନ ମଧ୍ୟରେ ଯୁଦ୍ଧର ବିଧି ସ୍ଥିର ହେବା ବେଳେ ଅର୍ଜୁନ ତ ଯୁଦ୍ଧ ପାଇଁ ଅନିଚ୍ଛୁକ ନଥିଲେ ତେବେ ପରେ ହେଲେ କିପରି ? ଭୀଷ୍ମ ଅର୍ଜୁନ କଥୋପକଥନ ବେଳେ ତ ଅର୍ଜୁନ ରଣାଙ୍ଗନର ମଧ୍ୟ ଭାଗରେ ଥିଲେ, କୃଷ୍ଣଙ୍କୁ ରଥକୁ ରଣାଙ୍ଗନ ମଧ୍ୟକୁ ନେବାକୁ କହିଲେ କେତେବେଳେ ?

ଯୁଦ୍ଧର ଆରମ୍ଭ ବେଳର ଦ୍ୱିବିଧ ବିବରଣରୁ ଜଣାଯାଉଛି ଯେ ଦୁଇଟି ବିବରଣର ରଚୟିତା ଭିନ୍ନ ଭିନ୍ନ ବ୍ୟକ୍ତି । ଗୀତାର ରଚନା ପରବର୍ତ୍ତୀ ସମୟରେ ହୋଇ ତାହାକୁ ମହାଭାରତ ମଧ୍ୟରେ ଭର୍ତ୍ତି କରାଯିବାରୁ ଏପରି ବିବରଣଗତ ପାର୍ଥକ୍ୟ ରହିଛି ।

୬) ବର୍ତ୍ତମାନ ଉପଲବ୍ଧ ଭଗବଦ୍ ଗୀତା ମହାଭାରତରେ ପରବର୍ତ୍ତୀ କାଳରେ ଭର୍ତ୍ତି କରାଯାଇଥିବାର ଆଉ ଏକ ପ୍ରମାଣ ରୂପେ ଅନୁଗୀତାକୁ ଉପସ୍ଥାପନ କରାଯାଇପାରେ । ଭଗବଦ୍ ଗୀତା ଯୁଦ୍ଧର ଆରମ୍ଭ ପୂର୍ବେ ବ୍ୟକ୍ତ । ଯୁଦ୍ଧ ସରିବା ପରେ ଅନୁଗୀତା ବ୍ୟକ୍ତ ହୋଇଛି ସେହି ମହାଭାରତରେ ସେହି କୃଷ୍ଣଙ୍କ ମୁଖରେ । ଅନୁଗୀତାର ସାରାଂଶ ଏହା ପରେ ପୃଥକ୍ ଭାବରେ ଦିଆଯାଇଛି । ଏହି ଅନୁଗୀତାରେ କୃଷ୍ଣ ଯୁଦ୍ଧର ଆରମ୍ଭ ବେଳେ ଯାହା କହିଥିଲେ ତାହା ଭୁଲିଗଲେଣି ବୋଲି ସ୍ୱୀକାର କରି କାଶ୍ୟପ ନାମକ ବ୍ରାହ୍ମଣ ଜନୈକ ସିଦ୍ଧ ବିପ୍ରଙ୍କ ପାଖରୁ ପାଇଥିବା ଜ୍ଞାନର ବିଶଦ ବିବରଣ ଦେଇଛନ୍ତି । ଏଠାରେ କୃଷ୍ଣ ସେହି ବ୍ରାହ୍ମଣଙ୍କ ଠାରୁ ପାଇଥିବା ଜ୍ଞାନର ବିବରଣ ଦେଇ କହିଛନ୍ତି ଯେ ଭାରତ ଯୁଦ୍ଧର ଆରମ୍ଭରେ ସେ ଅର୍ଜୁନଙ୍କୁ ଏହି ଜ୍ଞାନ ହିଁ ଦେଇଛନ୍ତି । ଅନୁଗୀତାରେ ବିବୃତ ସନାତନ ଧର୍ମର ବିବରଣ ସହିତ ଭଗବଦ୍ ଗୀତାରେ ବିବୃତ ବିବରଣର ସାମ୍ୟ ତୁଳନାରେ ବୈଷମ୍ୟ ଅଧିକ । ଭଗବଦ୍ ଗୀତାରେ ଏହି ଧର୍ମକୁ ଭଗବାନ୍ ପ୍ରଥମେ ବିବସ୍ୱାନ୍ଙ୍କୁ କହିଥିଲେ ବୋଲି କୁହାଯାଇଛି । କୃଷ୍ଣ ହିଁ ଭଗବାନ୍ ବୋଲି ଭଗବଦ୍ ଗୀତା କହେ । ଅଥଚ ଅନୁଗୀତାରେ କୃଷ୍ଣ ଜନୈକ ବ୍ରାହ୍ମଣ ଠାରୁ ଏହି ଜ୍ଞାନ ପାଇଛନ୍ତି ଓ ସେହି ବ୍ରାହ୍ମଣ ତାହାକୁ କୌଣସି ଅନାମଧେୟ ସିଦ୍ଧ ଯୋଗୀଙ୍କ ଠାରୁ ପାଇଛନ୍ତି ବୋଲି କଥିତ ହୋଇଛି ।

ଅନୁଗୀତା ନାମଟି ଯୁଦ୍ଧର ପରବର୍ତ୍ତୀ କାଳର ସଙ୍କେତ ବହନ କରୁଛି (ଅନୁ—ପଶ୍ଚାତ୍) । ଏଥିରେ ଯୁଦ୍ଧର ଆରମ୍ଭରେ ଏକ ଗୀତା ଥିବା ସ୍ୱୀକୃତ । ସେହି ଗୀତାର ତତ୍ତ୍ୱ ସହିତ ଅନୁଗୀତାରେ ବିବୃତ ତତ୍ତ୍ୱ ନିଶ୍ଚୟ ସମାନ ବୋଲି କୃଷ୍ଣ କହିଥିବା କଥାରୁ ସୂଚନା ମିଳୁଛି ଯେ ଅନୁଗୀତା ରଚନା ପୂର୍ବରୁ ମହାଭାରତ ଆରମ୍ଭରେ କୃଷ୍ଣ ଅର୍ଜୁନଙ୍କୁ କିଛି ଜ୍ଞାନୋପଦେଶ ଦେଇଥିଲେ ଯାହା ଅନୁଗୀତାର ଜ୍ଞାନୋପଦେଶର ଅନୁରୂପ । କିନ୍ତୁ, ଉପଲବ୍ଧ ଭଗବଦ୍ ଗୀତାର ଜ୍ଞାନ ତତ୍ତ୍ୱ ଭିନ୍ନ ପ୍ରକାର ଥିବାରୁ ଜଣାଯାଏ ଯେ ଏହି ଭଗବଦ୍ ଗୀତା ଅନ୍ୟ ଏକ ପ୍ରାଚୀନ ଗୀତାର ସ୍ଥାନ ପୂରଣ କରୁଛି । ପ୍ରାଚୀନ ଗୀତାର ସତ୍ତା ବର୍ତ୍ତମାନ ନାହିଁ ।

ଏହି ସବୁ କାରଣରୁ ଅନୁମିତ ହେଉଛି :—

୧) ଭଗବଦ୍ ଗୀତା ମୂଳରୁ ମହାଭାରତର ଅଂଶ ନଥିଲା, ଯଦିଚ ମହାଭାରତର ପୃଷ୍ଠଭୂମିକୁ ନେଇ ଏହାର ରଚନା ହୋଇଥିଲା ।

୨) ମହାଭାରତରେ ପୂର୍ବରୁ ଏକ କ୍ଷୁଦ୍ରଗୀତା ଥିଲା ଯାହାକୁ ହଟାଇ ଦେଇ ଭଗବଦ୍ ଗୀତାକୁ ସେଠାରେ ଭର୍ତ୍ତିକରାଗଲା ।

# ଅନୁଗୀତା

ମହାଭାରତର ପ୍ରଚଳିତ ପାଠରେ ଗୀତାଖ୍ୟ ବହୁ ରଚନା ରହିଛି । ତନ୍ମଧ୍ୟରେ ଶ୍ରୀମଦ୍ ଭଗବଦ୍ ଗୀତା ବୃହତ୍ତମ ଓ ବିଖ୍ୟାତ । କ୍ଷୁଦ୍ରାକାର ଗୀତା ଗୁଡ଼ିକ ମଧ୍ୟରେ ଗୀତାର ରୂପ ଭିନ୍ନ ପ୍ରକାରର ଥିବା କଥା ସେଥିରୁ ଜଣାଯାଉଛି । ଅନୁଗୀତାର ବିଷୟବସ୍ତୁ ଏହିପରି :—

ମହାଭାରତ ଯୁଦ୍ଧ ସରିବା ପରେ ଯୁଧିଷ୍ଠିର ରାଜ୍ୟାଭିଷିକ୍ତ ହେଲେ । ଦିନେ କୃଷ୍ଣ ଅର୍ଜୁନଙ୍କୁ କହିଲେ " ମୁଁ ଦ୍ୱାରକା ଫେରିବି, ଯୁଧିଷ୍ଠିରଙ୍କୁ କହି ଅନୁମତି ଅଣାଅ । "

ଅର୍ଜୁନ କହିଲେ ତୁମେ ମୋତେ ଯୁଦ୍ଧ ଆରମ୍ଭ ବେଳେ ଯାହା ସବୁ କହି ଈଶ୍ୱରତ୍ୱ ପ୍ରକାଶ କରିଥିଲ ତାହା ମୁଁ ଭ୍ରଷ୍ଟଚେତନ ହୋଇ ଭୁଲିଯାଇଛି । ତାହା ପୁନର୍ବାର ନ କହିଲେ ଅନୁମତି ଅଣାଇବି ନାହିଁ । ଅଶ୍ୱମେଧ, ୧୬ ଅଧ୍ୟାୟ :—

ବିଦିତଂ ମେ ମହାବାହୋ ସଂଗ୍ରାମେ ସମୁପସ୍ଥିତେ ।
ମାହାତ୍ମ୍ୟଂ ଦେବକୀମାତସ୍ତବତେ ରୂପମୈଶ୍ୱରମ୍ ॥ ( ୫ )

ଯତ୍ତଦ୍ ଭଗବତା ପ୍ରୋକ୍ତଂପୁର କେଶବ ସୌହୃଦାତ୍ ।
ତତ୍ସର୍ବଂ ପୁରୁଷବ୍ୟାଘ୍ର ନଷ୍ଟଂ ମେ ଭ୍ରଷ୍ଟ ଚେତସଃ ॥ ( ୬ )

ମମ କୌତୂହଲ ତ୍ୱସ୍ତି ତେଷ୍ୱର୍ଥେଷୁ ଭୂୟେପୁନଃ ।
ଭବାସ୍ତୁ ଦ୍ୱାରକା ଗନ୍ତା ନ ଚିରାଦେବ ମାଧବ ॥ ( ୭ )

ଶ୍ରୀ କୃଷ୍ଣ କହିଲେ "ମୁଁ ସର୍ବ ଲୋକର ଶାଶ୍ୱତ ସନାତନ ଧର୍ମ ବିଷୟକ ମହାଗୁହ୍ୟ କଥା ତୁମକୁ କହିଥିଲି । ତୁମେ ତାକୁ ଭୁଲିଯାଇ ଅଧମ କାର୍ଯ୍ୟ କରିଛ । ସେତେବେଳେ ମୁଁ ଯାହା ଯାହା କହିଥିଲି ମୋର ସ୍ମୃତିରେ ନାହିଁ, ଆଉଥରେ କହି ପାରିବି ନାହିଁ ।

ଶ୍ରାବିତସ୍ତ୍ୱଂ ମହାଗୁହ୍ୟଂ ଜ୍ଞାପିତଶ୍ଚ ସନାତନମ୍ ।
ଧର୍ମଂ ସ୍ୱରୂପିଣ ପାର୍ଥ ସର୍ବ ଲୋକାଂଶ୍ଚ ଶାଶ୍ୱତାନ ॥ ( ୯ )

ଅବୁଦ୍ଧ୍ୟା ନ ଗ୍ରହୀର୍ଯସ୍ତ୍ୱଂ ତନ୍ମେ ସୁମହଦପ୍ରିୟମ୍ ।
ନ ଚ ସାଦ୍ୟ ପୁନର୍ଭୂୟଃ ସ୍ମୃତିର୍ମେ ସମ୍ଭବିଷ୍ୟତି ॥ ( ୧୦ )

ନୂନମଶ୍ରଦ୍ଦଧାନୋଽସି ଦୁର୍ମେଧା ହ୍ୟସି ପାଣ୍ଡବ ।
ନ ଚ ଶକ୍ୟଂ ପୁନର୍ବକ୍ତୁମଶେଷେଣ ଧନଞ୍ଜୟ ॥ ( ୧୧ )

ସ ହି ଧର୍ମଃ ସୁପର୍ଯ୍ୟାପ୍ତୋ ବ୍ରହ୍ମଣଃ ପଦବେଦନେ ।
ନ ଶକ୍ୟଂ ତନ୍ମୟା ଭୂୟସ୍ତଥା ବକ୍ତୁମଶେଷତଃ ॥ ( ୧୨ )

ପରଂ ହି ବ୍ରହ୍ମ କଥିତଂ ଯୋଗଯୁକ୍ତେନ ତନ୍ମୟା ।
X X X ॥ ( ୧୩ )

ଏହି ବିଷୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏକ ପୁରାବୃତ୍ତ କହିଥିଲେ । କୃଷ୍ଣ ଏହି ପୁରାବୃତ୍ତ ଜଣେ ବ୍ରାହ୍ମଣଙ୍କ ପାଖରୁ ଶୁଣିଥିଲେ ବୋଲି ଜଣାଇ ପୁରାବୃତ୍ତଟିକୁ ଏହିପରି କହିଥିଲେ :—

କାଶ୍ୟପ ନାମକ ଜଣେ ବ୍ରାହ୍ମଣ ଜଣେ ସିଦ୍ଧଦ୍ୱିଜଙ୍କୁ ଗୁରୁତୁଲ୍ୟ ସେବା କଲେ । ସେବାରେ ତୁଷ୍ଟହୋଇ ସିଦ୍ଧଦ୍ୱିଜ କହିଲେ :-ମନୁଷ୍ୟ ଶରୀର ଜନ୍ମକୁ ଯାଉ ନାହିଁ । ମୁଁ ପାପ କରି-ବାରୁ ପୁଣ୍ୟସ୍ଥାନ ଭ୍ରଷ୍ଟହୋଇ ଏବେ ଦ୍ୱିଜ ହୋଇଛି । ମୋର ପୂର୍ବଜନ୍ମ ଜ୍ଞାନ ହେବାରୁ ମୁଁ ନିର୍ବେଦ ହୋଇ ବ୍ରହ୍ମ ଚିନ୍ତନ କରୁଛି । ତୁମେ କାହିଁକି ମୋ ସେବା କରୁଛ କହ ।

କାଶ୍ୟପ ସିଦ୍ଧ ଦ୍ୱିଜଙ୍କୁ ପଚାରିଲେ, ମନୁଷ୍ୟ କିପରି ଜନ୍ମ-ମରଣ ଲାଭ କରୁଛି ଓ କଣ କଲେ ମୁକ୍ତି ପାଉଛି, ତାହା ମୋତେ କହିବା ହେଉ ।

ସିଦ୍ଧ ଦ୍ୱିଜ କହିଲେ ଆୟୁଃ ଶେଷ ଆସିଲେ ମଣିଷ ବିପରୀତ ଆଚରଣ କରେ । ସେ ଅଭକ୍ଷ୍ୟ ଖାଏ, ଦିବା ନିଦ୍ରା କରେ, କଥା ଭୁଲେ, ତା ଦେହରେ ରୋଗ ବଢ଼େ, ସେ ଜୀବନରୁ ସ୍ନେହ ତୁଟେ । ଆତ୍ମା ଦେହ ଛାଡ଼ିଲେ ଲୋକେ କହନ୍ତି ସେ ମଲା । ସେ ସ୍ୱକୃତ ଅନୁସାରେ ଦେହ ପାଏ । ଭୂଲୋକ, ପରଲୋକ ଓ ମାତୃଗର୍ଭ ଛଡ଼ା ଆତ୍ମା ଅନ୍ୟତ୍ର ରହି ନ ପାରେ । ପୁଣ୍ୟକର୍ମୀମାନଙ୍କର ସ୍ଥାନ ସୂର୍ଯ୍ୟ ଚନ୍ଦ୍ର ମଣ୍ଡଳ । ସ୍ୱର୍ଗ-ବାସୀ ପୁଣ୍ୟକର୍ମୀମାନଙ୍କୁ ଲୋକେ ତାରା ରୂପରେ ଦେଖନ୍ତି । ମର୍ତ୍ତ୍ୟ ପରି ସ୍ୱର୍ଗରେ ମଧ୍ୟ ଉତ୍ତମ, ମଧ୍ୟମ ଓ ଅଧମ ଅବସ୍ଥା ରହିଛି ।

ମଣିଷ ଯେଉଁ ଶୁଭକର୍ମ କରେ ତାହାର ଫଳ ଦେହରେ ଭୋଗ କରେ । ସେ ମୋକ୍ଷଧର୍ମ ନ ଜାଣିଲେ ବାରଂବାର ଜନ୍ମ ମରଣ ଲାଭ କରୁଥାଏ ।

ମୋକ୍ଷଧର୍ମୀ ଯେଉଁ ସନାତନ ଧର୍ମ ଆଚରଣ କରେ ତାହା ହେଲା :-

୧) ବ୍ରହ୍ମଚର୍ଯ୍ୟ, (୨) ଦାନ, (୩) ପ୍ରଶାନ୍ତ ଆଚରଣ, (୪) ପ୍ରାଣୀ ଦୁଃଖ ହରଣ (୫) ବ୍ରହ୍ମଚିନ୍ତନ, (୬) ମାତୃ ପିତୃ ଶୁଶ୍ରୁଷା, (୭) ଶୌଚ, (୮) ବ୍ରତ, (୯) ଦମ (୧୦) ଶୁଭକର୍ମେ ପ୍ରବୃତ୍ତି, (୧୧) ଇନ୍ଦ୍ରିୟ ସଂଯମ, (୧୨) ଅନୃଶଂସ୍ୟ, (୧୩) ପରସ୍ୱ-ଆଦାନ ବର୍ଜନ, (୧୪) ଦୟା ଓ (୧୫) ଗୁରୁଦେବ ଅତିଥି ପୂଜନ । ଏ ସବୁ ଆଚରଣ ବିନା ମୋକ୍ଷ ନାହିଁ ।

ଜଗତ ହେଉଛି କ୍ଷର, ବ୍ରହ୍ମ ଅକ୍ଷର । ସୁଖ ଦୁଃଖ ଅନିତ୍ୟ ବୋଲି ଜାଣିବା ବ୍ୟକ୍ତି ପ୍ରଥମେ ଚତୁର୍ଭୁଜ ବିଷ୍ଣୁଙ୍କୁ ଚିନ୍ତା କରିବ । ତାହାପରେ ସୂକ୍ଷ୍ମମୂର୍ତ୍ତିଙ୍କୁ ଓ ଶେଷରେ ବ୍ରହ୍ମଙ୍କୁ ଭାବିବ ।

ସର୍ବମିତ୍ର, ସର୍ବସହ, ବିଜିତେନ୍ଦ୍ରିୟ ଓ ନିରାକାଂକ୍ଷ ହୋଇ ଲାଭାଲାଭ, ପ୍ରିୟାପ୍ରିୟ ସୁଖଦୁଃଖ ଓ ଜୀବନମରଣକୁ ସମାନ ଜ୍ଞାନ କଲେ ମଣିଷ ଜୀବୋନ୍ମୁକ୍ତହୁଏ ।

ସିଦ୍ଧ ଦ୍ୱିଜ ଏହା କହି ବର୍ତ୍ତମାନ ଯୋଗଶାସ୍ତ୍ର ବର୍ଣ୍ଣନା କରିବି ବୋଲି କାଶ୍ୟପଙ୍କୁ କହି ନିମ୍ନୋକ୍ତ ବିଷୟ କହିଲେ :-

ଇନ୍ଦ୍ରିୟଗୁଡ଼ିକୁ ବିଷୟରୁ ପ୍ରତ୍ୟାହୃତ କରାଇ ମନକୁ ଆତ୍ମାରେ ନିବିଷ୍ଟ ରଖି ତପ ଦ୍ୱାରା ଯୋଗଧର୍ମ ସାଧନ କରିବାକୁ ହୁଏ । ମଣିଷ ଯୋଗ ଦ୍ୱାରା ଦେହକୁ ଆତ୍ମାଠାରୁ ପୃଥକ୍‌ ବୋଲି ଜାଣିପାରେ ଓ ଫଳରେ ତାହାର ବ୍ରହ୍ମ ଦର୍ଶନ ଲାଭ ହୋଇଥାଏ । ଏହି ଲୋକ ନାଶଗଲେ ମଧ୍ଯ ଯୋଗୀର ଭୟ କି କ୍ଲେଶ ଜାତ ହୁଏ ନାହିଁ । ମୃତ୍ୟୁ ଦେବତା ଯୋଗୀର ଅନୁଗତ ରହେ । ଯୋଗୀ ଯେଉଁ ଯୋନିରେ ଜନ୍ମ ନେବାକୁ ନିଜେ ଇଚ୍ଛା କରେ ସେ ସେହି ଯୋନି ପ୍ରାପ୍ତ ହୁଏ । ଯୋଗୀ ମନକୁ ଶୁଦ୍ଧ ରଖି ପରମାତ୍ମାଙ୍କୁ ଦେଖେ, ସେ ଅନ୍ୟ କଥା କିଛି ଦେଖେ ନାହିଁ । ପରମାତ୍ମାଙ୍କ ଚକ୍ଷୁ-ପାଦ-ଶିର ଜଗତରେ ସର୍ବତ୍ର ଥିବା ସେ ଦେଖେ ।

ସିଦ୍ଧଯୋଗୀଙ୍କଠାରୁ ଏହି ଶିକ୍ଷା ପାଇ କାଶ୍ୟପ ନିଜ ଘରକୁ ଫେରିଥିଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କ ଆଗରେ ଏହି ଇତିହାସ ବର୍ଣ୍ଣନା କରି କହିଲେ, ମୁଁ ଏହାକୁ ଦ୍ୱିଜଙ୍କଠାରୁ ଯେପରି ଶୁଣିଥିଲି ସେପରି କହିଲି । ଭାରତ ଯୁଦ୍ଧର ଆରମ୍ଭରେ ମୁଁ ତୁମକୁ ଏହି କଥା ନିଶ୍ଚୟ କହିଥିଲି । ଅଚତୁର ଲୋକଙ୍କୁ ଏହି କଥା ଶତବାର କହିଲେ ବି ସେ ବୁଝିପାରେ ନାହିଁ । ତୁମେ ସର୍ବାଂଶରେ ଚତୁର ତେଣୁ ଏହାକୁ ହୃଦୟଙ୍ଗମ କର । ମର୍ତ୍ତ୍ୟରେ କର୍ମ ଆବୋଶ ଥିବାରୁ ମୋକ୍ଷଧର୍ମର ପ୍ରବର୍ତ୍ତନ ସାମାନ୍ୟ । ମୋକ୍ଷ ଧର୍ମ ପାଳନ କଲେ ଇତରବର୍ଣ୍ଣର ଲୋକେ, ବିଶେଷତଃ ବ୍ରାହ୍ମଣ ଓ କ୍ଷତ୍ରିୟମାନେ ମୁକ୍ତିଲାଭ କରିପାରନ୍ତି । ଏକା ଏକା ଛ ମାସ ଯୋଗ ସାଧନା କଲେ ସିଦ୍ଧି ମିଳେ । ଏ ପୃଥିବୀରେ ଯୋଗଠାରୁ ଶ୍ରେଷ୍ଠତର ହୋଇ କିଛି କଥା ନାହିଁ । 

ପରିଶିଷ୍ଟ :—

# ଉପନିଷଦ୍ > ଗୀତା

ଗୀତାପାଠ ବେଳେ ଗୀତାର ପ୍ରଶସ୍ତିବାଚକ ନିମ୍ନୋକ୍ତ ଶ୍ଳୋକଟି ପାଠ କରାଯାଏ :—

ସର୍ବୋପନିଷଦୋ ଗାବୋ ଦୋଗ୍ଧା ଗୋପାଳନନ୍ଦନଃ, ପାର୍ଥୋବତ୍ସଃ ସୁଧୀର୍ଭୋକ୍ତା ଦୁଗ୍ଧଂ ଗୀତାମୃତଂ ମହତ୍

ଏଥିରେ ଗୀତାର ତତ୍ତ୍ୱ ଉପନିଷଦ୍‌ରୁ ନିଆଯାଇଥିବା କଥାର ସୂଚନା ମିଳେ ।

ନିମ୍ନରେ କତିପୟ ଦୃଷ୍ଟାନ୍ତ ପ୍ରଦତ୍ତ ହେଲା :—

| ଗୀତା | ଉପନିଷଦ୍ |
|---|---|
| ୧. ୨/୧୯<br>ଯ ଏନଂ ବେତ୍ତି ହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତମ୍<br>ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ | ୧. କଠ ୧.୨.୧୯<br>ହନ୍ତାଚେନ୍ମନ୍ୟତେ ହନ୍ତୁଂ ହତଶ୍ଚେନ୍ମନ୍ୟତେ ହତମ୍<br>ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ । |
| ୨. ୨/୨୦<br>ନ ଜାୟତେ ମ୍ରିୟତେ ବା କଦାଚିତ୍<br>ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।<br>ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ<br>ନ ହନ୍ୟତେ ହନ୍ୟମାନେ ଶରୀରେ ॥ | ୨. କଠ ୧.୨.୧୮<br>ନ ଜାୟତେ ମ୍ରିୟତେ ବା ବିପଶ୍ଚିନ୍<br>ନାୟଂ କୁତଶ୍ଚିନ୍ନ ବଭୂବ କଶ୍ଚିତ୍ ।<br>ଅଜୋ ନିତ୍ୟଂ ଶାଶ୍ୱତୋଽୟଂ ପୁରାଣୋ<br>ନ ହନ୍ୟତେ ହନ୍ୟମାନେ ଶରୀରେ ॥ |

| ଗୀତା | ଉପନିଷଦ୍ |
| --- | --- |
| ୩. ୨/୨୯<br>ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ<br>ମାଶ୍ଚର୍ଯ୍ୟବଦ୍ ବଦତି ତଥୈବଚାନ୍ୟଃ ।<br>ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି<br>ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍ ॥ | ୩. କଠ ୧.୨.୭<br>ଶ୍ରବଣାୟାପି ବହୁଭିର୍ଯୋ ନ ଲଭ୍ୟଃ<br>ଶୃଣ୍ୱନ୍ତୋଽପି ବହବୋ ଯଂ ନ ବିଦ୍ୟୁଃ ।<br>ଆଶ୍ଚର୍ଯୋ ବକ୍ତା କୁଶଳୋଽସ୍ୟ ଲବ୍ଧା<br>ଶ୍ଚର୍ଯୋ ଜ୍ଞାତା କୁଶଳାନୁଶିଷ୍ଟଃ ॥ |
| ✱ ୪. ୩/୪୨<br>ଇନ୍ଦ୍ରିୟାଣି ପରାଣ୍ୟାହୁରିନ୍ଦ୍ରିୟେଭ୍ୟଃ ପରଂ ମନଃ<br>ମନସସ୍ତୁ ପରାବୁଦ୍ଧି ବୁଦ୍ଧେଯଃ ପରତସ୍ତୁ ସଃ । | ୪. କଠ ୧.୩.୧୦<br>ଇନ୍ଦ୍ରିୟେଭ୍ୟଃ ପରାହ୍ୟର୍ଥା ଅର୍ଥେଭ୍ୟଶ୍ଚ ପରଂ ମନଃ<br>ମନସସ୍ତୁ ପରାବୁଦ୍ଧିର୍ବୁଦ୍ଧେରାତ୍ମା ମହାନ୍ ପରଃ । |
| ୫. ୭/୨୫<br>ନାହଂ ପ୍ରକାଶଃ ସର୍ବସ୍ୟ ଯୋଗମାୟା ସମାବୃତଃ | ୫. କଠ ୧.୩.୧୨<br>ଏଷ ସର୍ବେଷୁ ଭୂତେଷୁ ଗୂଢୋଽତ୍ମା ନ ପ୍ରକାଶତେ |
| ୬. ୮/୯<br>ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ | ୬. ଶ୍ୱେତାଶ୍ୱତର ୩.୮ (= ଯଜୁଃ ୩୧/୧୮)<br>ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ |
| ୭. ୮/୯<br>ଅଣୋରଣୀୟାଂସ ମନୁ ସ୍ମରେଦ୍ୟଃ | ୭. ଶ୍ୱେତାଶ୍ୱତର ୩.୨୦ = କଠ ୧.୨.୨୦<br>ଅଣୋରଣୀୟାନ୍ମହତୋ ମହୀୟାନ୍ |

✱ ତତ୍ତ୍ୱର ପରିବର୍ତ୍ତନ ଅଛି ।

| ଗୀତା | ଉପନିଷଦ୍ |
| --- | --- |
| ୮. ୮/୧୧ | ୮. କଠ ୧.୨.୧୫ |
| ଯଦକ୍ଷରଂ ବେଦବିଦୋ ବଦନ୍ତି<br>ବିଶନ୍ତି ଯଦ୍ୟତୟୋ ବୀତରଗା<br>ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି<br>ତତ୍ତେ ପଦଂ ସଗ୍ରହେଣ ପ୍ରବକ୍ଷେ | ସର୍ବେ ବେଦା ଯତ୍ପଦମାମନନ୍ତି<br>ତପାଂସି ସର୍ବାଣି ଚ ଯଦ୍ ବଦନ୍ତି<br>ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି<br>ତତ୍ତେ ପଦଂ ସଗ୍ରହେଣ ବ୍ରବ୍ୟୋମିତ୍ୟେତତ୍ |
| ୯. ୮/୨୧ | ୯. କଠ ୧.୩.୧୧. + ୨.୩.୧୦ |
| ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍ତମାହୁଃ ପରମାଂ ଗତିମ୍<br>ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ ॥ | ମହତଃ ପରମବ୍ୟକ୍ତମବ୍ୟକ୍ତାତ୍ପୁରୁଷଃ ପରଃ<br>ପୁରୁଷାନ୍ନ ପରଂ କିଂଚିତ୍ସା କାଷ୍ଠାସା ପରା ଗତିଃ ।<br>+ବୁଦ୍ଧିଶ୍ଚ ନ ବିଚେଷ୍ଟତି ତାମାହୁଃ ପରମାଂ ଗତିମ୍ |
| ୧୦. ୯/୫ | ୧୦. ବୃହଦାରଣ୍ୟକ ୩.୯.୨୬ |
| ଭୂତଭୃନ୍ନ ଚ ଭୂତସ୍ଥୋ ମମାତ୍ମା ଭୂତଭାବନଃ | |
| ୧୧. ୧୧/୧୬ | ୧୧. (କ) ଋଗ୍ ବେଦ ୧୦.୮୧.୩ |
| ଅନେକ ବାହୂଦର ବକ୍ତ୍ରନେତ୍ରଂ<br>ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତ ରୂପଂ<br>ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦ୍ୟଂ<br>ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପ | ବହୁବକ୍ତ୍ର, ବହୁବାହୁ<br>(ଖ) ପୁରୁଷସୂକ୍ତ, ଋଗ୍ ବେଦ ୧୦.୯୦.୧<br>(ଗ) ଶ୍ୱେତାଶ୍ୱତର ୩.୩<br>ବିଶ୍ୱତଶ୍ଚକ୍ଷୁରୁତ ବିଶ୍ୱତୋମୁଖୋ<br>ବିଶ୍ୱତୋ ବାହୁରୁତ ବିଶ୍ୱତସ୍ପାତ୍ |

| ଗୀତା | ଉପନିଷଦ୍ |
|---|---|
| | (ଗ) ଶ୍ୱେତାଶ୍ୱତର ୩.୧୪<br>ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍<br>ସ ଭୂମିଂ ବିଶ୍ୱତୋ ବୃତ୍ୱାଽତ୍ୟତିଷ୍ଠ ଦଶାଙ୍ଗୁଳମ୍ |
| ୧୨. ୧୩/୧୨<br>ଅନାଦିମତ୍ପରଂ ବ୍ରହ୍ମ ନ ସତ୍ତନ୍ନାସଦୁଚ୍ୟତେ | ୧୨. ନାସଦୀୟ ସୂକ୍ତ |
| ୧୩. ୧୩/୧୩<br>ସର୍ବତଃ ପାଣିପାଦଂ ତତ୍ସର୍ବତୋଽକ୍ଷି ଶିରୋମୁଖମ୍<br>ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି । | ୧୩. ଶ୍ୱେତାଶ୍ୱତର ୩.୧୬ + ପୁରୁଷସୂକ୍ତ<br>ସର୍ବତଃ ପାଣି ପାଦଂ ତତ୍ସର୍ବତୋଽକ୍ଷି ଶିରୋମୁଖମ୍<br>ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ॥ |
| ୧୪. ୧୩/୧୪<br>ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍<br>ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ | ୧୪. ଶ୍ୱେତାଶ୍ୱତର ୩.୧୭<br>ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍<br>ସର୍ବସ୍ୟ ପ୍ରଭୁମୀଶାନଂ ସର୍ବସ୍ୟ ଶରଣଂ ବୃହତ୍ ॥ |
| ୧୫. ୧୩/୧୫<br>ବହିରନ୍ତଶ୍ଚ ଭୂତାନାମଚରଂ ଚରମେବ ଚ<br>ସୂକ୍ଷ୍ମତ୍ୱାତ୍ତଦବିଜ୍ଞେୟଂ ଦୂରସ୍ଥଂ ଚାନ୍ତିକେ ଚ ତତ୍ । | ୧୫. (କ) ଈଶାବାସ୍ୟ ୫<br>ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ୱନ୍ତିକେ<br>ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ |

| ଗୀତା | ଉପନିଷଦ୍ |
| --- | --- |
| | (ଖ) ମୁଣ୍ଡକ ୩.୧.୭<br>ବୃହଚ୍ଚ ତଦ୍ଦିବ୍ୟମଚିନ୍ତ୍ୟ ରୂପଂ<br>ସୂକ୍ଷ୍ମାଚ୍ଚ ତତ୍ସୂକ୍ଷ୍ମତରଂ ବିଭାତି<br>ଦୂରାତ୍ ସୁଦୂରେ ତଦିହାନ୍ତିକେ ଚ<br>ପଶ୍ୟତ୍ସ୍ୱିହୈବ ନିହିତଂ ଗୁହାୟାମ୍ |
| ୧୭. ୧୪/୩<br>ମମ ଯୋନିର୍ମହଦ୍ ବ୍ରହ୍ମ ତସ୍ମିନ୍ ଗର୍ଭଂ ଦଧାମ୍ୟହଂ<br>ସମ୍ଭବଃ ସର୍ବ ଭୂତାନାଂ ତତୋ ଭବତି ଭାରତ । | ୧୭. ମୁଣ୍ଡକ ୩.୧.୩<br>ଯଦା ପଶ୍ୟଃ ପଶ୍ୟତେ ରୁକ୍ମବର୍ଣଂ<br>କର୍ତ୍ତାରମୀଶଂ ପୁରୁଷଂ ବ୍ରହ୍ମଯୋନିମ୍ |
| ୧୭. ୧୫/୧<br>ଊର୍ଦ୍ଧ୍ୱମୂଳମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟଂ<br>ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ବେଦବିତ୍ | ୧୭. (କ) କଠ ୨.୩.୧<br>ଊର୍ଦ୍ଧ୍ୱମୂଳୋଽବାକ୍ଶାଖ ଏଷୋଽଶ୍ୱତ୍ଥଃ ସନାତନ<br>ତଦେବ ଶୁକ୍ରଂ ତଦ୍ ବ୍ରହ୍ମ ତଦେବାମୃତମୁଚ୍ୟତେ<br>ତସ୍ମିଂଲ୍ଲୋକାଃ ଶ୍ରିତାସର୍ବେ ତଦୁ ନା ତ୍ୟେତି<br>କଶ୍ଚନ ଏତଦ୍ୱୈ ତତ୍ ।<br>(ଖ) ମୈତ୍ରୀ ୬.୪ ଏବଂ |

| ଗୀତା | ଉପନିଷଦ୍ |
| --- | --- |
| ୧୮. ୧୫/୬<br>ନ ତଦ୍ ଭାସୟତେ ସୂର୍ଯ୍ୟୋ ନ ଶଶାଙ୍କୋ ନ ପାବକଃ<br>ଯଦ୍‌ଗତ୍ୱା ନନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ | ୧୮. (କ) ଶ୍ୱେତାଶ୍ୱତର ୬.୧୪<br>ନତତ୍ର ସୂର୍ଯ୍ୟୋଭାତି ନ ଚନ୍ଦ୍ରତାରକଂ<br>ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ<br>ତମେବ ଭାନ୍ତମନୁଭାତି ସର୍ବଂ<br>ତସ୍ୟ ଭାସା ସର୍ବମିଦଂ ବିଭାତି ।<br>(ଖ) କଠ ୨.୨.୧୫ ଏକ<br>(ଗ) ମୁଣ୍ଡକ ୨.୨.୧୦ ଏକ |
| ୧୯. ୧୫/୯<br>ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଂ ଚ ରସନଂ ଘ୍ରାଣମେବଚ<br>ଅଧିଷ୍ଠାୟ ମନଶ୍ଚାୟଂ ବିଷୟାନୁପସେବତେ । | ୧୯. କଠ ୧.୩.୪<br>ଆତ୍ମେନ୍ଦ୍ରିୟ ମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ |
| ୨୦. ୧୫/୧୪<br>ଅହଂ ବୈଶ୍ୱାନରୋ ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ<br>ପ୍ରାଣାପାନ ସମାଯୁକ୍ତଂ ପଚାମ୍ୟନ୍ନଂ ଚତୁର୍ବିଧମ୍ | ୨୦. ବୃହଦାରଣ୍ୟକ ୫.୯.୧<br>ଅୟମଗ୍ନିର୍ବୈଶ୍ୱାନରୋ ଯୋଽୟମନ୍ତଃ<br>ପୁରୁଷେ ଯେନେଦମନ୍ନଂ ପଚ୍ୟତେ । |
| ✻ ୨୧. ୧୫/୧୬, ୧୭<br>ଦ୍ୱାବିମୌ ପୁରୁଷୌଲୋକେ କ୍ଷରଶ୍ଚାକ୍ଷର ଏବ ଚ<br>କ୍ଷର ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ<br>ଉତ୍ତମ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ | ୨୧. (କ) ଶ୍ୱେତାଶ୍ୱତର ୧.୮<br>ସଂଯୁକ୍ତମେତତ୍ କ୍ଷରମକ୍ଷରଂ ଚ<br>ବ୍ୟକ୍ତାବ୍ୟକ୍ତଂ ଭରତେ ବିଶ୍ୱମୀଶଃ |

| ଗୀତା | ଉପନିଷଦ୍‌ |
| --- | --- |
| ୨୨. ୧୬/୬<br>ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ୍ ଦୈବ ଆସୁର ଏବ ଚ | + ଶ୍ୱେତାଶ୍ୱତର ୧.୧୦<br>କ୍ଷରଂ ପ୍ରଧାନ ମମୃତାକ୍ଷରଂ ହରଃ<br>କ୍ଷରାତ୍ମାନାବୀଶତେ ଦେବ ଏକଃ ।<br>+ ଶ୍ୱେତାଶ୍ୱତର ୧. ୧୨<br>ଭୋକ୍ତା ଭୋଗ୍ୟଂ ପ୍ରେରିତାରଂ ଚ ମତ୍ୱା<br>ସର୍ବଂ ପ୍ରୋକ୍ତଂ ତ୍ରିବିଧଂ ବ୍ରହ୍ମମେତତ୍ ।<br>ଖ) କଠ ୧.୩.୧୧<br>ମହତଃ ପରମ ବ୍ୟକ୍ତମବ୍ୟକ୍ତାତ୍ପୁରୁଷଃ ପରଃ<br>ପୁରୁଷାନ୍ନପରଂ କିଞ୍ଚିତ୍ ସାକାଷ୍ଠା ସା ପରାଗତିଃ<br>୨୨. ବୃହଦାରଣ୍ୟକ ୧.୩.୧ |

✱ ଗୀତାର କ୍ଷରାକ୍ଷରୋତ୍ତମ ତତ୍ତ୍ୱ ଶ୍ୱେତାଶ୍ୱତର/କଠ ଠାରୁ ଭିନ୍ନ :—

| | ଗୀତା | ଶ୍ୱେତାଶ୍ୱତର | କଠ |
| --- | --- | --- | --- |
| ୧. | ପୁରୁଷ (ତ୍ରିବିଧ) | ବ୍ରହ୍ମ (ତ୍ରିବିଧ) | |
| ୨. | ପୁରୁଷୋତ୍ତମ | ହର | ପୁରୁଷ |
| ୩. | କ୍ଷର | ପ୍ରଧାନ, କ୍ଷର | ମହତ୍ତ୍ୱ |
| ୪. | ଅକ୍ଷର | ଅକ୍ଷର, ଅମୃତ | ଅବ୍ୟକ୍ତ |

